# ଆମୁଖ

'କବିତା, ୧୯୬୨' ଓ 'କବିତା, ୧୯୬୯' ପରେ 'କବିତା, ୧୯୭୧' ପ୍ରକାଶ ପାଉଛି । ଅନେକ ପାଠକ ମୋ କବିତା ବିଷୟରେ ଦୀର୍ଘ ଭୂମିକା ଆଶା କରିଥାଂତି । ମାତ୍ର ମୋର ବର୍ତ୍ତମାନ ଏକ ବଡ଼ ପ୍ରବଂଧ ଗ୍ରଂଥ 'ସାହିତ୍ୟ-ବିଚାର ଓ ମୂଲ୍ୟବୋଧ' ନାମରେ ପ୍ରକାଶ ପାଇବାକୁ ଯାଉଛି । ସାହିତ୍ୟତତ୍ତ୍ୱ ତଥା ମୂଲ୍ୟବୋଧ ସଂବଂଧୀୟ ଆଲୋଚନା ଏହି ପୁସ୍ତକରେ ଯଥା ସଂଭବ କରାଯାଇଛି । ତେଣୁ ଏ ବିଷୟରେ ଆଉ କୌଣସି ବଡ଼ ମୁଖବଂଧ ଦେବାର ଆବଶ୍ୟକତା ନାହିଁ ।

'କବିତା, ୧୯୭୧' ର କେତୋଟି କବିତା ବାଂଲାଦେଶର ମୁକ୍ତି ସଂଗ୍ରାମକୁ ଉପଜୀବ୍ୟ କରି ରଚିତ ହୋଇଥିଲା । ଏ କବିତାଗୁଡ଼ିକ ରଚିତ ହେବା ସମୟର ପରିସ୍ଥିତି ଓ ପୃଷ୍ଠଭୂମି ବର୍ତ୍ତମାନ ଆଉ ନାହିଁ । ତେଣୁ ଏଗୁଡ଼ିକର ମର୍ମ ଉପଲବ୍ଧି କରିବାକୁ ହେଲେ ସେ ସମୟର ପରିବେଶର କଳ୍ପନା କରିବାକୁ ହେବ ।

'କବିତା, ୧୯୭୧' ସୁଧୀସମାଜରେ ଆଦୃତ ହେଲେ ମୁଁ ଶ୍ରମସାର୍ଥକ ମନେ କରିବି । ଇତି ।

'ଦିଗଂତ'
ମିସନ୍ ରୋଡ଼
କଟକ-୧
ମାର୍ଚ୍ଚ ୧୮, ୧୯୭୨

ସଚ୍ଚିଦାନଂଦ ରାଉତରାୟ

# ସୂଚୀ

# କବିତା, ୧୯୭୧

ଲେଖକ


ସଚ୍ଚିଦାନଂଦ ରାଉତରାୟ



ପ୍ରକାଶକ

ଜେ. ମହାପାତ୍ର ଏଣ୍ଡ କୋ

ଗ୍ରୁବସାଥି ଅଫିସ, କଟକ-୨

**KAVITA, 1971**

by

*Satchidananda Raut Roy*

Publisher :

*J. Mohapatra & Co.*

*Cuttack—2*

Printer

*Nabajuga Press*

Cuttack-2

First Edition 1972



ପ୍ରକାଶକ

ଜେ. ମହାପାତ୍ର ଏଣ୍ଡ କୋ:

ଗ୍ରନ୍ଥସାଥି ଅଫିସ

କଟକ-୨

ମୁଦ୍ରଣ :

ନବଯୁଗ ପ୍ରେସ

ମାଲତିପଡ଼ା

କଟକ-୨

ପ୍ରଥମ ପ୍ରକାଶ . ୧୯୭୨



# ଜନ୍ମାଷ୍ଟମୀ-୧୯୭୯

ଗଲା ପୁଣି ବାହୁଡ଼ି ନଇଲା ।
ଫେରିବାର ପଥ ଭିନ୍ନ,
ଯେଣୁ ତାହା ନୁହେଁ ଏକ ସାମନାକୁ ଚଲା ।
ନୁହେ ଯେଣୁ ତାହା ମୂଳାବଲା ।।

ଯିଏ ଗଲା ସିଏ ସତେ ଆସନ୍ତା କି ଫେରି ?
କିନ୍ତୁ ଫେରିବାର ପଥ ଆଉ ଯିବା ପଥ ନୁହେ ଏକାପରି
ମଝିରେ ଯେ ରହିଛି ସମୟ ।
ଗଢ଼ି ବହୁ ରୂପାନ୍ତର, ନୂଆ ନୂଆ ହେବାର ବିସ୍ମୟ ।।

ଆଜି ଯଦି କେଉଁ ଯାଦୁକର
ତୁମକୁ ହିଁ ଜୀବନ୍ୟାସ ଦେଇ
ଦିଅନ୍ତା ଜୀଆଇ,
ଏବଂ ମୃଗକର୍ଣ୍ଣ ପରି ତୁମ ଦୁଇ ପାଦ
ହଠାତ୍ ପାଆନ୍ତା ଫେରି ଗତିର ଆନନ୍ଦ,
ତୁମେ କି ଫେରନ୍ତ ଠିକ୍ ଯେଉଁଠାରୁ
ଯାଇଥିଲ ସେଦିନ ଉଭେଇ !!

ଅସମ୍ଭବ ।
ସମସ୍ତ ତା ଦେବନି କରାଇ ।
ଠକ୍ ଠକ୍ କମ୍ପି ତୁମ ଦୁଇ ରଥ-ଅଶ୍ୱ
ପଥରେ ପଡ଼ନ୍ତେ ଛଳି ହୋଇ ଯେ ଅଦର୍ଶ ।
ଏବଂ ତୁମ ଜୟ-ସ୍ତମ୍ଭ
ତୁମକୁ ପାରନ୍ତା ନାଇ ଚିହ୍ନି ।

ଏବଂ ତୁମ ବନମାଳା, ମୟୂର ଚଂଦ୍ରକା
ସମସ୍ତର ଖବ୍ ବାଜି ପଡ଼ଂତା ଝାଉଁଳି ।
ତୁମ ଚକ୍ଷୁ ବେକର
ଯାଉଂତାକ ଦେଖି ବହୁ ଅଦେଖା ଶତ୍ରୁରେ ।
ବହୁ ସୂକ୍ଷ୍ମ ରହସ୍ୟାଂତା ଅବୁଝା, ଅଜଣା ।
ତୁମ ସୁଦର୍ଶନ ଚକ୍ର
ଯାଆଂତାକ୍ର ଅଜସ୍ର ଠିକଣା
ଅଜଣା ଶତ୍ରୁର ।
କାରଣ ଶତ୍ରୁ ଆଜି ନାଇ ସାମନାରେ ।
ସେ ରହିଚ ସଭ୍ୟର ପ୍ରତ୍ୟେକ କେଂନ୍ଦ୍ରେ
ଅଦୃଶ୍ୟ ଛଳରେ ।
ଗାଂଡ଼ୀବ ଯେ ପରଣତ ଗୋଟିଏ ଥଳୀରେ ।
ଏବଂ ତୁମ ଜବ୍ସଂଧ
ଦେଖ ଦେଖ ହସେ କାହା ବ୍ୟାଂକ୍ ଖାତାରେ ।
( କିପର ଆଲୋଳ କର ତୋଷଖାନା-ଘର ଦ୍ୱାରବଂଧ !
ଏବଂ ବୃଷସ୍କଂଧ
ବୀରମାନେ ଆଜି ପର୍‌ହତ ।
ଶାଳପ୍ରାଂଶୁ ଭୁଜ ସ୍ଥଳେ ଗୋଟିଏ ବୋତାମ
ଟିପିବା ପାଇଁକି ଲୋଡ଼ା ଯଥେଷ୍ଟ ଯେ ସରୁ
ନଳୀ ହାତ ।
ଏବଂ ଏକ କଂପୁଟର୍-ମଥା
ଏବଂ ଟିକେ ବିଦ୍ୟା, ବୁଦ୍ଧି, ଜ୍ଞାନ,
ଟିକେ ଅଭ୍ୟସ୍ତତା ।
ପୁଣି ଟିକେ ରସିକତା, ନ ହୋଇ ଯା ବିଲକୁଲ ଶୁଷ୍କ
ଆର୍ଦ୍ର କର ପାରୁଥିବ ହୃଦୟ, ମସ୍ତିଷ୍କ ।
( ଅବସର ବେଳେ )
ତୁମ ବୃନ୍ଦାବନ ପର ଲୋଡ଼ା ନାଇ
ଏତେ ବଡ଼ ରସର ଉଦ୍ୟାନ ।
ଆମେ ସବୁ ଭଲ ଅଛୁଁ ।
ଠିକ୍ ଅଛୁଁ ଆପଣା ଜାଗାରେ ।
ତୁମେ ସ୍ୱର୍ଗୁ ଦେଖୁଥିବ ଆମେ ସବୁ ହସୁଁ କ ପ୍ରକାରେ
କାଂନ୍ଦିବା ଜାଗାରେ ।
ଏବଂ ଆମ 'ହଁ' ସବୁ କେଉଁପର 'ନାଇଁ',
ନଞର୍ଥକ, ଠୋସ୍ ।

'ନାଇ' ପୁଣି ବେଳେ ବେଳେ ହୁଏ ଏକ
ହଁ ର କୋରସ୍ !!

ଆମେ ସବୁ ବେଶ୍ ଅଛୁଁ ।
ତୁମେ ଯଦି ଆମ ପରି ହୋଇ
ନ ଆସି ପାରିବ ବରଂ ନ ଆସିବା ଭଲ ।
କାରଣ ଫେରିବାର ପଥ ନୁହେଁ ଯିବା ପଥ ପରି ।
ଯେ ଅକ୍ରୂର ନେଇଥିଲା ତୁମ ରଥ ବାହି
ସେ ବି ଆଜି ଫେରିବାର ବାଟ ଚିହ୍ନେ ନାଇ ।
କାରଣ ଫେରିବାର ପଥ ଆଉ ଯିବା ପଥ ନୁହେଁ ଏକାପରି ।।

—ସେପ୍ଟେଂବର, ୧୯୭୧



॥ ୧୯୭୧ ॥

ସେ ସବୁ ତ ଭାଙ୍ଗିଗଲା ।
ଭାଙ୍ଗିପଡ଼େ ଯେଉଁପରି ପାହାଡ଼ର ଛେଳି
ଡିନାମାଇଟ୍‌ରେ ।
ଶୂନ୍ୟ ସ୍ଥାନେ ଉଠିବ କି ଗଛ ?
ଅଥବା ଗଂଧର୍ବମାନେ ବଜାଇ ବେହେଲା
ଯୋଡ଼ିଦେବେ ସେ ଭଂଗା ପିତୁଳା ?
ଥାପିବେ ବା ନୂଆ କରି ସ୍ମୃତିର କଳସ ?
ଯେ ବରଗଛ ପ୍ରତିଦିନ ଦେଖୁଥିଲେ ଆମେ
ସ୍ମୃତିର କାହାଣୀ ପରି,
ଯାର ଚୌଡ଼ା କପାଳରେ ଶୀତର ଶିଉଳି
ଖରା ଲାଗି ଚକ୍‌ଚକ୍ କରେ,
ଏବଂ ଯାହା ପରେ
କାଉ ଆଉ ଚଲ ଆଉ ପାରାମାନେ ଖେଳ
କରୁଥିଲେ ରୋଜଇ ମଇଳା ।
ଏବଂ ଯାର ପାଦତଳେ, ଓସ୍ତ ଗଛ ମୂଳେ,
ଖରାଦିନେ ଶୋଉଥିଲେ ବୁଭୁକ୍ଷୁଙ୍କ ଦଳ
ଖୋଲା ମୈଦାନରେ,
( ଏବଂ ଶୀତ ଦିନେ ରାସ୍ତାର କୁକୁର, )
ତାହା ଆଜି ଭାଙ୍ଗିଗଲା ।
ସେ ବରଗଛ ମୋର ପିତାଂକର ।
ସିଏ ଥିଲେ ଅତି ଭଲ ଲୋକ,
କୋଟ୍ ପ୍ୟାଂଟ ପିଂଧି ସିଏ ଧଳା ଖଦଡ଼ର
ଯାଉଥିଲେ ରୋଜ କଚେରୀକୁ,

ଏବଂ ଫେରୁଥିଲେ ପକେଟକୁ କରି ବୋଝେ ଖାଣ୍ଟି
ସଞ୍ଜବେଳେ ସହରର ଛକରୁ ।
ଥିଲେ ସିଏ ନାମିକା ଓକିଲ
ପ୍ରଚଳିତ କାନୁନର ।
ତାଂକ ଟେବୁଲରେ ଥିଲା ନାନା ଶାସ୍ତ୍ର ଥାକ,
ଆଇନର ଖେଦା, ନଥି, ବହୁତ ନଜିର,
କାବ୍ୟତତ୍ତ୍ୱ, ମେଘନାଦ ବଧ,
ଶେଲୀ, ବାଏରନ ଓ 'ଆନଂଦ ମଠ',
ଭଂଜ, ଚଂପୂ, ଏକାଦଶ ସ୍କଂଦ ।
ମହାଯାତ୍ରା, ଚଂଦ୍ରଭାଗା । ଛ'ମାଣ ଆଉ ଆଠ ଗୁଂଠ ।
ଏବଂ ଶୋଇବା ଘର କାଂଥରେ ଯାହାଂକ
ଝୁଲୁଥିଲେ ହାତବଳା ସିଗ୍ରେଟ ଧୂଆଁରେ
ରାମକୃଷ୍ଣ ଓ ବିବେକାନଂଦ ।
ତିଳକ ଓ ଗାଂଧି, ମୋତିଲାଲ,
ରବୀଂଦ୍ର, ମିଷ୍ଟର ଦାସ,
ପଠାଣି ସାମଁତ ।
ଏବଂ ଥିଲେ ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ସହିତ,
ମଂଜି ଘର, ଦଣ୍ଡିଂଧି ବହିଁତ ।
ତାଂକ ମୃତ୍ୟୁ ବେଳେ ମୁଁ ଥିଲି ଦୂରରେ
ହୁଏତ ବା ଖୋଜୁଥିଲି ଟାଇମ୍ ଟେବୁଲରେ
ଦଂଡ଼କାରଣ୍ୟରୁ
ଅଯୋଧ୍ୟାକୁ ଫେରୁଥିବା ଟ୍ରେନ୍‌ର ସମୟ ।
ଅବା ଗଂଜା ମାଂସ ।
ତ୍ରିଶ ଦଶକ—
ନ ପୂରୁଣୁ ପିତାଂକର ହୋଇଥିଲା କାଳ ।
ଥିଲେ ସିଏ ସତ୍ୟପ୍ରିୟ, ଅତି ସଦାଶୟ
ଏବଂ ଧର୍ମଭୀରୁ,
ଅତି ଭଦ୍ରଲୋକ ।
ମନେ ପଡ଼େ ତାଂକର ସେ ସାଦାସିଧା ମୁଖ,
ହଂସ-ଶୁକ୍ଳ ଖଦଡ଼ର ହସ,
ପ୍ରତିମା ବିରଳ.........॥

ବାପା ମୋର ଯାଇଥିଲେ ମରି ।
ସେଦିନ ମୁଁ କାଂଦିଥିଲି କହିଁ କାହିଁ, ଟେଲିଗ୍ରାମ ଲୁହରେ ବତୁରି
ଯାଇଥିଲା ମିଳି ।

ତାଂକ ଅଂତେ ଆଜ ଗଲା ଭାଜି
ସେଇ ପରିଚିତ ବିଶ୍ୱ,
ମୋତେ କରି ହତଭମ୍ବ, ନିସ୍ୱ
ଏବଂ ନିଃସଂତାନ ।
ଆଜ ଆହା ଭାଜିଗଲା ସେଇ ସ୍ଥିର, ନିଶ୍ଚିତ ଶତକ,
ଉଜ୍ଜ୍ୱଳ, ମହାନ,
(ପିତୃ-ପ୍ରତିମାର । )
ଭାଜିଗଲା ଶୈଶବର ମୋର ନୀଳାଚଳ ।
ପିତା ମୋର ଯାଇଥିଲେ ମରି,
ସେଦିନ ମୁଁ କାଂଦିଥିଲି କଇଁକଇଁ ଦଶରଥ ରାଜା କଥା ସ୍ମରି ।
ପିତା ମୋର ଥିଲେ ଜଣେ ଅତି ଭଦ୍ରଲୋକ ।
ସତ୍ୟପ୍ରିୟ, ଯେ ସତ୍ୟର ଆଜ ଆଉ ଦିଶେ ନାଇଁ ମୁଖ ।
ଦେଖାଯାଏ ଖାଲି ଅନ୍ୟ ପାଖ ।
ପିତା ଥିଲେ ଖୁବ୍ ଭଲ ଲୋକ ।।

—ଜୁନ୍, ୧୯୭୧



# ପୂର୍ବଜନ୍ମ

ବହୁ ପ୍ରସ୍ତ ଲିପା ଭେଦ୍ ଭିତ୍ତି-ଚିତ୍ର ପରି
ମୋର ପୂର୍ବଜନ୍ମ ଫୁଟେ ହଠାତ୍ କିପରି
ଜାତିସ୍ମର ଚେତନାର ପଟେ,—
ବିରଳ ମୁହୂର୍ତ୍ତେ କେଉଁ ନୀଳ ପ୍ରେକ୍ଷାପଟେ
କାଠଚଂପା ଫୁଟା ମଧ୍ୟାହ୍ନରେ ।
ପୁଣି ତାହା ଲିଭିଯାଏ ହସ୍ତାକ୍ଷର ପରି ।
କେବେ ପୁଣି ସ୍ଥାୟୀ ହୁଏ ଟିକେ ବେଶୀ କ୍ଷଣ
ସମୟର ପୃଷ୍ଠାରେ ଏକାଂତେ ।
ମୁଁ ଦେଖଇ ସ୍ପଷ୍ଟ ମୋତେ, ମୋ ମୁକୁଟ, ମୋ ସଂତକ,
ମୋର ଉପବୀତ ।
କେଉଁ ଏକ ପାହାଡ଼ୀ ରାଜ୍ୟର ଦୁର୍ଗେ ଏକ
ମରୁଭୂମିସ୍ଥିତ ।
ଏବଂ ଦେଖେଁ ମୋର ପ୍ରିୟା ପିଂଧି ଶ୍ୱେତ ପାଟ
ବହୁ ମୁକ୍ତାମାଳରେ ଶୋଭିତ,
ଅପରୂପ ବେଶେ ଆସି ଠିଆହୁଏ ପାଶେ,
ବିବାହ ପୂର୍ବର ତାର ଫଟୋ।
ସହ ଚେହେରାଟା ମିଳିଯାଏ ତାର ବହୁ ଅଂଶେ ।
ପୁଣି ଦେଖେ ମୋର ବହୁ ଉପପତ୍ନୀ, ଚିତ୍ରଶାଳା,
ଝଲମଲ ସ୍ଥାପତ୍ୟର ସ୍ତଂଭ,
ବିଜିତର ରକ୍ତେ ତୋଳା କଲାର ମହଲ,
ପଦ୍ମ-ହ୍ରଦ, ସ୍ୱର୍ଣ୍ଣର ହରପ୍ପା ।
ଏବଂ ବହୁ ଗଣିକାଂକ ସୁର ପରି ଲୀଳ
ଘୁଂଗୁର ଓ ଟପା,
ଏବଂ ବ୍ରୋଂଜର ମୂର୍ତ୍ତି ପୂର୍ବପୁରୁଷଂକ, ତାମ୍ର-ଖଂଡ
ଦାନପତ୍ରମାନ

(        )

ଏବଂ ମୋର ସୁବିସ୍ତୃତ ବଂଶ
ପୁଣି ଶୂନ୍ୟେ ଖଂଡ଼ିଆର ଝନଝନ, ବେନାମୀ ବିଶାଣମାନ
ଉଡ଼ିବା ଆକାଶେ ।
ଦଗ୍ଧ ଚନ୍ଦ୍ର, ଶବ୍ଦ ଛୁଟେ ଫାଟି ।
ଟୋକା ଡାକପିଅନଟା ପଢ଼େ ଯେଉଁପରି
ବହୁ ଗାଆଁ ଝିଅଂକର ଚିଠି,
କେବଳ ସେତିକି ନୁହେଁ, ବନାନ ବି ବେଳେ ବେଳେ
କରେ ସଂଶୋଧନ,
ସେଇପରି ସେ ଚନ୍ଦ୍ରର କିଛି ଅଂଶ ମୋର ବର୍ତ୍ତମାନ
ଖୋଲି ଦେଖେ ନିଷେଧ ନ ମାନି ।
ଏବଂ କରେ କିଛି ବି ଶୋଧନ,
ପ୍ରଚଳିତ ତାର ମୂଲ୍ୟମାନେ ।
ହୁଏ ମୋର ମନେ
ଆଜିଟା ବା ବିଗତ କାଳର ଏକ ଅପଭ୍ରଂଶ ।
ଫେରଯାଏଁ ସମସ୍ତଙ୍କୁ, ବାସ୍ତବକୁ,
ଧକ୍କା ଖାଇ ଅଜ୍ଞାତର ଦେହେ ।
ଝିଲମିଲ ଅନାଗତ, ଧୂସର ଭବିଷ୍ୟ,
ଆଗାମୀର କରୁଣ ବିଗ୍ରହେ ।
ଆପଣାକୁ ଖୋଜେ ଯେତେ ଯେତେ
ସେତେ ହୁଏ ଖଂଡ଼ ଖଂଡ, ବହୁଧା ବିଭକ୍ତ,
ଭଗ୍ନ ଆଉ ନିଷ୍ଠୁର ସଂଦେହେ ।
ମୋର ପୂର୍ବଜନ୍ମ ଫୁଟେ ଗ୍ଲାସ୍‌ଛବି ପରି
ଚେତନାର ଜୀର୍ଣ୍ଣ ଚନ୍ଦ୍ରପଟେ ।
କାଠଚଂପା ଫୁଟା କେଉଁ ବିରଳ ମଧ୍ୟାହ୍ନେ
ସମସ୍ତର ସୁଦୂର ନୈକଟ୍ୟ ॥

—ଅକ୍ଟୋବର, ୧୯୭୧



# ଓଡ଼ିଶା

ମୁଁ ଆଂକିଚି ଚିତ୍ର ତାର କେତେ ଯେ ଥିଲିଟି,
ସଫେଦ୍ ଚକ୍‌ରେ ପୁଣି ସ୍କୁଲ୍ ବ୍ଲାକବୋର୍ଡ଼େ ।
ମୁଁ କରିଚି ମୁଖସ୍ଥ ତା' ସୀମା, କ୍ଷେତ୍ରଫଳ
ଲୋକସଂଖ୍ୟା, ଜିଲ୍ଲା ଓ ସହର ।
ଏବଂ ଛ ଛ'ଟା ମୁଖ୍ୟମଂତ୍ରୀ ନାମ ।
ଏବଂ କିଛି ମୃତ ଓ ଜୀବିତ
                    ଲୋକଂକ ଠିକଣା ।
ମୁଁ କହେ ଓଡ଼ିଆ ପିଲାଦିନୁ ଷୋଳ ଅଣା ।
ମୁଁ ଦେଇଚି ଦସ୍ତଖତ
                    ସାଦା କାଗଜରେ
ନୂଆ ଇସ୍ପାତ କାରଖାନା ଶୀଘ୍ର ହେଉ ବୋଲି ।
ମୁଁ କାଂଦିଚି ବାହୁନି ତା ବିଚ୍ଛିନ୍ନ ଅଂଚଳ,
                    ଗଂଗାଠୁ ଯା ଥିଲା ଗୋଦାବରୀ
ଏବଂ ମା ପେଟରେ ଥିଲାବେଳେ ଶୁଣିଥିଲି ପିତାଂକ ମୁହଁରେ—
ଏଠି କାହିଁ ହେଉଥିଲା ତୋଳା, ସମୁଦ୍ର ପିଠିରେ
ସୂର୍ଯ୍ୟଂକ ଦେଉଳ ।
ପୁଣି, ଜନ୍ମ ହେବା ଗୁଡ଼ିବର୍ଷ ପରେ ଥିଲି ଶୁଣି
ମାମୁଁ କହୁଥିଲେ—
କେବେଠୁ ତା ଭାଂଗିଗଲାଣି ।।

ମୁଁ ଜଣେ ଓଡ଼ିଆ, ଶତକଡ଼ା ଅନେଶୋତ ଭାଗ ।
ତେଣୁ ଏଠି ହୋଇପାରେ ଅକ୍ଲେଶରେ ଠିଆ
ନିଜଗୋଡ଼େ ମୁଁ ଏକଗୋଡ଼ିଆ,
ନିଜସ୍ୱ ମାଟିରେ ।
ଏବଂ ଟେକି ଅନ୍ୟ ଗୋଡ଼ ଊର୍ଦ୍ଧ୍ୱ ଆକାଶକୁ
ମାଗିପାରେ ଭିକ୍ଷା

ଘନ ପାଦ ଭୂଇଁ, ଘନ ଲୋକଯାକୁ,
ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ବାମନ ପଣକୁ ।
ଏବଂ ପୁଣି ରିକ୍ସା ଭଡ଼ା କରି
କରିପାରେ ଏମୁଣ୍ଡ ସେମୁଣ୍ଡ ସହର ଶଫର,
ଧୂ ଧୂ ଖରାବେଳେ ।
ମୁ କହେ ଓଡ଼ିଆ ଖାଂଟି ନରୁଡା, ନରୋଲା ।
ଶବ୍ଦଶେଷ ସ୍ୱରବର୍ଣ୍ଣମାନ
ଜାଣି ଶୁଣି ଦୀର୍ଘ କରି କରେ ଉଚ୍ଚାରଣ ।
(ଯେତେ ପାରେ ହଳଂତକୁ କରେ ମୁଁ ବର୍ଜନ)
ପଶିଗଲେ ଧସି କେବେ ଇଂରାଜୀ, ମୁଁ କରେ ତା ତର୍ଜମା
ଫଗେ ଫଗେ ଓଡ଼ିଆରେ ; କହେ 'ଗୃହେଁ କ୍ଷମା' ।
ଯୋଡ଼େ ଏକ 'ମାନେ' ଅଥବା 'ଅର୍ଥାତ୍' ।
ମୁଁ କହେ ଓଡ଼ିଆ ଭଲ କରି ମେହନତ ।।

ମୁଁ ଜଣେ ଓଡ଼ିଆ, ଶତକଡ଼ା ଶହେ ।
ପୈତୃକ ମାଟିରେ ମୋର ବନା ପରବାସ୍ତେ
ମୁଁ ଯେ ବଢ଼େ, ମୁଁ ଇ ଛୁଟେ, ପୁଣି ବଢ଼େ
ଉଇ ହୁଂକା ପରି, ନଧାର୍ଯ୍ୟ ନାଷ୍ଟସ୍ତେ ।
ଯଦଚ ମୁଁ ଅଜାଣତେ ଛାଂକ ହୋଇପଡ଼େ
ବେଲେବେଲେ ଭୟଂକର ସାପର କାଡରେ ।।

ମୁଁ ଏଠାରେ ଝାମୁ ଗୃଲେ ଡହ ଡହ ରଡ଼ ନଆଁ ଗାଡ଼େ
ବେହୋସ କାଳଶି ପରି । ମାନ୍ଦ ଯେବେ ଭାବେ ମୁହିଁ କପର ଦଉଡ଼େ
ତତଲ ନଆଁରେ, ତଳପା ମୋ ଯାଏ ଜଳ ପୋଡ଼ି ।
ହଠାତ୍ ତେଲୁଣୀପୋକ ଭାବେ ଯେବେ ତା ସହସ୍ର ପାଦ
କପରି ଗୃଳୁଚ ସିଏ, ଗତ ତାର ହୁଏ ଯଥା ବଂଦ ।।

ମୁଁ କହେ ଓଡ଼ିଆ ଖାଂଟି, ତାଲବ୍ୟ 'ଶ'
ଯ-ଫଳା ଦେଇ ।
ମୂର୍ଧନ୍ୟକୁ ଗୃପି ଧରି, ଦଂତ୍ୟ ବର୍ଣ୍ଣ
ଦାଂତକୁ ନକାଟି ।
ମୁଁ ଗୃଲେ ଏ ବାଲୁଗରଡ଼ାରେ ଖାଲି ଝୁଂଟି ଝୁଂଟି ।

କାଦୁଅ ପଂକରେ ଚଳ, ଘଷି ଘଷି ଚଟି ।
( ଶୂନ୍ୟ ମଂଚ ତଳେ ମୁଁ ଯେ ବୁଲାଏ ବନାଟି । )
ଏବଂ, ରଥଯାତ୍ରା ଦିନ ଯୋଡ଼ି ବେତକୁ ହଲାଇ
ମୁଁ ଗାଏ ତାହାଙ୍କ ଗୀତ ଶିର-କନା ନାଇ ।
ଶେଷରେ ଘରକୁ ଫେରେ ତୋଳି ଯାମୁକୋଳି
ବାଟରେ, ମୋ ଭରି ଭଞ୍ଜୁ ଅଂଟି ।
ମୁଁ କହେ ଓଡ଼ିଆ ମୋର ଖୋଲିବା ପାଟି,
ମୁଁ ଓଡ଼ିଆ କରୋଳା ଓ ଖାଂଟି ॥

—ନଭେମ୍ବର, ୧୯୭୦



## ।। ହରେକୃଷ୍ଣ ।।

ହରେକୃଷ୍ଣ ହରେକୃଷ୍ଣ, କୃଷ୍ଣ କୃଷ୍ଣ, ହରେ ହରେ'
କଳିଯୁଗେ ନାମଯଜ୍ଞ ସର୍ବପାପ, ସର୍ବତାପ ହରେ ।
କର୍ମ ଯେବେ ହଗହଗ୍, ବାଷ୍ପାକୁଳ ସମସ୍ତ ଆକାଶ
ସନ୍ଧି ଯେବେ ଦ୍ୱନ୍ଦ୍ୱମୟ, ସଂଘାତହିଁ ଯେବେବି ବିକାଶ ;
ଶାନ୍ତ ହେବ ସହଜ, ସରଳ, ଏବଂ ପ୍ରାଣମୟ ।
ଯାଗଯଜ୍ଞ, ତନ୍ତ୍ରମନ୍ତ୍ର ଗୁହ୍ୟ-ଲୀଳା, ଆସନ, ତନ୍ମୟ
ଇଡ଼ା ଓ ପିଂଗଳା ଭେଦ, ବିନ୍ଦୁ, ନାଦ ଏବଂ ସରହ,
ରଜକଜୀ ଅବା ଡୋମ୍ବୀ ଏବଂ ଶେଷେ ଏକ ମହାସୁହ ।
ଶୂନ୍ୟ ପୁଣି ନାଦର ସଂଭବ, ନାଦରୁ ହିଁ ଶବ୍ଦ ।
ଏ ଶବ୍ଦ ଯେ ଧଇରଖେ ମଣିପୁର ମୂର୍ଦ୍ଧନ୍ୟ-ଛନ୍ଦ ।

ଯାହା ବୀଜ, ଯାହାହିଁ ଓଁକାର ।
ସେଠାରେ ମରଚ ସବୁ ଯେତେ ବୈପରୀତ୍ୟ,
ଶ୍ରେଣୀ ଆଉ ବର୍ଣ୍ଣର ଦ୍ୱାପର ।
ମୋର ଗୃହ ଛଅ ଇଂଚ ଶୂନ୍ୟ, ଏବଂ ଟିକେ ନାଦ,
ସେ ହେଉ ଅଜପା ଅବା ଜପା, ଚର୍ଯ୍ୟାପଦ ।
ଅଭାବ ଓ ଭାବ, ବୋଧିଚିତ୍ତ ପୁଣି କରୁଣା,
କାଳଚକ୍ର ସଂଗେ ଗୃହ ମୋର ଏକ ପ୍ରଜ୍ଞା ପାରମିତା ।
ଏଇ ପଥ ଭିନ୍ନ ଭିନ୍ନ ନାମେ
ବ୍ୟାପିଅଛି ଚେତନାରେ ଯୁଗେ ଯୁଗେ,
କାହ୍ନୁପା ଓ ହାଡ଼ିପା ମାଧ୍ୟମେ ।

ଏ ସବୁରୁ ମୁକ୍ତ ଗୃହ, ଗୃହ ମୋର : ସୁଗମ ସରଳ
ଛଅଶ ଇଂଚର ଏକ ସୁଖମୟ ପଥ,
ଏବଂ ଏକ ଶାନ୍ତର ଆସ୍ଥାନ
ଦୁଇ ଫୁଟ ଗୋଲାର୍ଦ୍ଧର, ଏବଂ ମରିବା ପାଇଁ
ଆଠଫୁଟ ସ୍ଥାନ ।

ମୋର ଗୃହ ଏତେ ବଡ଼ ଆକାଶର ତଳେ
ପରମିତ ଅଳ୍ପଟିକେ ଭୂଇଁ—
ଯାହା ମୋର ସମସ୍ତ ଯୌନତା ଓ ନଗ୍ନତାକୁ
ରଖିବ ଘୋଡ଼ାଇ ।
ଏବଂ ଯାହା ମୋତେ ଡାକୁଥିବ ସଂକଟବୃକ୍ଷେ
ସେଉଁପରି ଗ୍ରାମାଂତର ନଈ—
ଶରବନ ତଳେ, ଏବଂ ଯାହା ମୋତେ ଦେବ
ମୁକ୍ତିର ଉଜ୍ଜ୍ୱଳ ପଥ ସୂର୍ଯ୍ୟସ୍ରୋତ ଜିଣି ।।
ନାମ ସେଇ ପଥ । ଯେଣୁ ତାହା ସଂଜ୍ଞା
ଯେଣୁ ତାହା ଏକ ସ୍ୱାଧୀନତା ।
ଯେଣୁ ତାହା ଏକ ପରିଚୟ,
ତାହା ବଂଧୁ, ତାହାହିଁ ତ ପୁଣି
ସୀମାହୀନ ଅମୋଘ ବିସ୍ମୃତି ।
ନାମହିଁ ତ ସ୍ଥିତି ।
ଅସତ୍ତାରେ ନାମହିଁ ତ ସତ୍ତା ।।
ଅଗଣିତ ହିପ୍‌ପୀ କଂଠେ ବିକୃତ ସ୍ୱରରେ
ସେ ନାମ ଅଦ୍ଭୁତ ଶୁଭେ ।
ସେ ନାମ ଅଦ୍ଭୁତ ଶୁଭେ ହ୍ୱାଇଟ୍‌ ପାର୍କରେ
କାଠର ଡ୍ରମର ପରେ ଛନ୍ଦାହୋଇ ଧରି ବଣାଖୁଂଟେ
ବକ୍ତୃତାକାରୀର ମୁହେଁ, ଅବା ପିକାଡିଲୀ ଅବା ବ୍ରଡ୍‌ଓ୍ୱେ ଛକରେ,
( କିଂବା ମ୍ୟାନ୍‌ହାଟାନରେ )
ହୃଷୀକେଶ ନିଭୃତ କଂଦରେ ସେ ହୁଏ କିଛିଟା ସୋଜା
ଧୈର୍ଯ୍ୟ ଓ ପ୍ରସ୍ଥରେ ।
ମାତ୍ର ନାମ ରହେ ସେଇ ନାମ ।
ସୃଷ୍ଟିକରେ ସୌଂଦର୍ଯ୍ୟର ନବ ନବ ଧାମ ।
ପୁଣି ବହୁ ରକ୍ତାକ୍ତ ଦ୍ରାଘିମା ।
ସେ ଫୁଟାଏ ଷୋଳସହ ଆଶ୍ଚର୍ଯ୍ୟ ପ୍ରତିମା
ନିଭୃତ ନଦୀର ତୀରେ ।
ଏବଂ ବହୁ ମୃତଚକ୍ର, ରଥୀ, ଧ୍ୱଜା, ଅଶ୍ୱ, ଅଶ୍ୱତ୍ଥାମା କରୁଣ କଂକାଳ ।
ମଳିନ କାଳର ପଟେ, ସେ ନାମରେ ହୁଏ ଏକାକାର,
ମୁଁ ଏବଂ ମୋର ଏବଂ ଯାହା କିଛି ଆମ ସମସ୍ତର ।
ଅସଂଖ୍ୟ ଭୟ ଓ ମୃତ୍ୟୁ, ଦୁଃଖ ଗ୍ଳାନି,
ଆନଂଦ ମୁହୂର୍ତ୍ତମାନ ଚକ୍‌ଚକ୍‌ ମୁକ୍ତାଫଳ ଜିଣି,
ଦ୍ୱିଧା ଓ ସଂକୋଚ, ଦ୍ୱଂଦ୍ୱ, କ୍ଷମାହୀନ ନିଷ୍ଠୁର ଆକ୍ରୋଶ ।

ହତ୍ୟା ଓ ଯଂତ୍ରଣା,
ଚେତନାର ବହୁ ଦୁର୍ଗ, ନଶାଣିତ ବିଦୀର୍ଣ୍ଣ ଭଗ୍ନାଂଶ,
ଏ ସମସ୍ତ ସେଇ ନାମେ ଫୁଟିଉଠି କ୍ଷଣେ ହୁଏ ମ୍ଳାନ,
—ଯାହା ହୁଏ ମୋର ସବୁ ପ୍ରେମ, ସବୁ ଜୟର୍ କେତନ ।
ପୁଣି ସବୁ ଯଂତ୍ରଣାର ଲିପି ।
ତାହାହିଁ ତ ମୋ ଚେତନାପଟ୍ଟ ।
ଏ-ଜନ୍ମ ଓ ପୂର୍ବଜନ୍ମ ଚିତ୍ରପଟ୍ଟ ।

ସେ ନାମ ମୁଁ ନେଇପାରେ ସଂଗ୍ରାମେ ଓ କ୍ଷତେ,
ରତିକାଳେ, ଦୁଃଖର ସଙ୍କଟେ ।
ନଗ୍ରେଲା ଯାତ୍ରାରେ ଅବା ବେଲା-ଡ୍ରାଇଭରେ
ସୁବାଂଧବୀ ସଂଗେ କେଉଁ କ୍ଷପ୍ସୀ-ପ୍ରହରେ ।
ସେ ନାମ ମୁଁ ନେଇପାରେ ବ୍ରିଜ୍-ଖେଳବେଳେ
ଯେତେବେଳେ ଯେଉଁଠାରେ ମନଇଚ୍ଛା ମୋର ।
ସେ ନାମ—ଯା ଏକ ସଂଜ୍ଞା, ଏକଇ ସଂକେତ
ସାମାନ୍ୟରୁ ବିଶେଷେ ଯିବାର ।

ଶବ୍ଦ ସବୁ ହୋଇପାରେ ଭୁଲ,
କ୍ରମଜୀର୍ଣ୍ଣ,
ବଦଳି ବି ଯାଇପାରେ ମାନେ ।
ଭିନ୍ନ ଭିନ୍ନ ଅର୍ଥ ବି ତ ମିଳିପାରେ ଭିନ୍ନ ଅଭିଧାନେ ;
କିଂତୁ କିଛି ଯାଏ ଆସେ ନାହିଁ ।
ନାମ ନାମ, ନାମବ୍ରହ୍ମ । ନାମ ଏକ ଶୁଭ ସଂଖୋଳା ହିଁ
ପରସ୍ପରେ ଚିହ୍ନିବାକୁ । ପରସ୍ପରେ ଡାକିବାର ପାଇଁ
(ଯେପରି ସକଳେ ଡାକେ ସକାଳର ମେଘୁଆ ସାନାଇ)
ଯେପରି ସକଳେ ଲେଡ଼େ ଶୀତସଂଜେ ତାସ୍‌ର ଆସର
ଚଉକୋଣ ଟେବୁଲର ପାଶେ, ଏବଂ କିଛି କଫିର ବାହାର ।

ଶବ୍ଦ ସବୁ ହୋଇପାରେ ଭୁଲ ।
ମାତ୍ର କିଛି ଯାଏ ଆସେ ନାଇଁ ।
ମୋର ମୋଟୀ ପଡ଼ୋଶୁଣୀ ସେ ପ୍ରୌଢ଼ାଂକ ସର
ଅଟେରଛି ବଡ଼ ସାନ, ସାନ ବଡ଼, ମହିଆଂକୁ ଦୁଖଜାନ୍ମ ଦେଇ—

ବୈରାଗ୍ୟରେ ହୋଇ ଜର୍ଜରିତ, ଗୁରୁମନ୍ତ୍ର ନେଇ
ହୋଇଥିଲେ ସିଏ ହନ୍ତହନ୍ତ ।
(ଦେଢ଼଼ଶୁର ନାମ ହରି, ସ୍ୱାମୀଙ୍କର ନାମ କୃଷ୍ଣ ବୋଲି)
ହୋଇ ତେଣୁ ଭୀଷଣ ସ୍ୱାନସ୍ତ।
ଶେଷେ କରି ବହୁ କାଟଗୁଣ୍ଠ, ଓଲଟ ପାଲଟ
କରିଥିଲେ ସିଏ ମହାମନ୍ତ୍ର ଜପପାଠ—
(ଫଡ଼େ ପୁଷ୍ଟ, ପଡ଼େ ପୁଷ୍ଟ, ପୁଷ୍ଟ ପୁଷ୍ଟ ଫଡ଼େ ଫଡ଼େ ।)
ମୃତ୍ୟୁ ପରେ ଯମଦୂତ ବିଷ୍ଣୁଦୂତ ମଧ୍ୟେ
ଧସ୍ତାଧସ୍ତି ଲାଗିଥିଲା ବଡ଼
ତାଙ୍କ ଶବକଡ଼େ ।
ଶେଷେ କିନ୍ତୁ ଯାଇଥିଲେ ସିଧା ସିଏ ଶୁଣେ ସ୍ୱର୍ଗଲୋକ । *
ସେଉଁଠିକି ଯାଆନ୍ତୁ ସେ ସ୍ୱର୍ଗେ ଅବା ଅତଳ ନରକ ।
ନାମ ସତ୍ୟ । ନାମ ଯେଣୁ ନାମ ।
ନାମ ବ୍ରହ୍ମ ।
ନାମ ଏକ ପରିଚୟ,
ଏକ ସ୍ୱାଧୀନତା ।
ସାମାନ୍ୟରୁ ବିଶେଷକୁ ଆସିବାର ପଥ ସେ ନିଶ୍ଚୟ ।
ଅସତ୍ତ୍ୱରୁ ସତ୍ତ୍ୱ ।।

—ଡିସେମ୍ବର, ୧୯୭୦



* ଏ ଗଳ୍ପଟି ରାମକୃଷ୍ଣ ପରମହଂସ ଦେବ ଅନେକ ସମୟରେ କହୁଥାନ୍ତି ବୋଲି ତାଙ୍କ ସମ୍ବନ୍ଧୀୟ ଗ୍ରନ୍ଥମାନଙ୍କରୁ ଜଣାଯାଏ—ଲେଖକ

# ହେଆର୍ ପିନ୍

ସମସ୍ତ ବିଛଣା ଆଉ ସମଗ୍ର ଘରଟା
ଖୋଜିଲିଣି ମୁଁ ଯେ ଖିନ୍‌ଭିନ୍,
ମାତ୍ର ମିଳିଲା ନାହିଁ, କାହିଁଗଲା
ତୁମ ହେଆର ପିନ୍ ?

ପୁଣି ବି ତ ମିଳୁ ନାହିଁ
ବଡ଼ିସ୍ ଓ ବ୍ଲାଉସର
ସଭ୍ରାନ୍ତ ସୌଖିନ
ଦାନ୍ଦିଆ ରୂପା ସେଫ୍‌ଟିପିନ୍ ।
ଖୋଜିଲିଣି ଝରକା ବାହାରେ
ଅନ୍ଧାରର ସବୁ ପର୍ଦ୍ଦା ଖୋଲି,
ଏବଂ ମିହିନ୍ ଜ୍ୟୋତ୍ସ୍ନାକୁ ଉଖାରି ।
ଏବଂ ସମୟର ଉତ୍ତୀର୍ଣ୍ଣ ପାହାଚେ—
ଯେଉଁଠି ରହିଛି ଆମ ସମସ୍ତ ନଗ୍ନତା
ବିବସ୍ତ୍ର ଆତ୍ମାର ଖୋଲା ମଞ୍ଚେ ।

ଖୋଜିଲିଣି ନିକଟେ ଓ ଦୂରେ,
ବହୁବର୍ଷ ତଳେ ଏବଂ ବହୁବର୍ଷ ପରେ ।
ନଦୀ ତଟେ' ସମୁଦ୍ର କିନାରେ,
ପ୍ରତ୍ୟନ୍ତ-ହୋଟେଲେ,
ଯେଉଁଠାରେ କଟିଅଛୁ ଅନେକ ମୁହୂର୍ତ୍ତ
ନଦୀ ପରି ନୀଳ ଆଉ ନିର୍ଜନ ପ୍ରେମାଂଚରେ ।
କେଉଁଠି ତ ମିଳୁନାହିଁ ସୁନ୍ଦର ନିବୁଜ
ତୁମରି ସଜଡ଼ା ଗଣ୍ଠି, ବୁକୁର ଗମ୍ବୁଜ ।

ବରଂ ଦେଖେ ଉଗହ୍ରସ୍ତ କେଶର ଶ୍ରାବଣ
ଅନାବୃତ ଶୈଳସାନୁ ଡାଂକେ ସ୍ତବ୍ଧ ଇଂତେ ।
ଏବଂ ଗଢ଼େ ଏକ ଉଚ୍ଚ ଉଲଂଗ ପ୍ରତିମା,
ସମସ୍ତର ସପ୍ତକୋଣୀ ଗଂଢେ,
ବିସ୍ମୃତର ଭଉଁରୀ ଆବର୍ତ୍ତେ
ଯା'ର ବିସର୍ଜନ କରି ଫେରିପାଏ ମୋ'ର ତୂରନ୍ଧ୍ର ।।

—ସେପ୍ଟେଂବର୍, ୧୯୭୦



# ଅଟୋଗ୍ରାଫ୍

ସାହିତ୍ୟର ଦର୍ପଣରେ ସେଦିନ ସେ
ପ୍ରୋଦ୍‌ଭିନ୍ନା କିଶୋରୀ
ଖୋଜିଥିଲା ମୋର ଫଟୋଗ୍ରାଫ୍ ।
ଆଜି ଦେଖେଁ, ବେଶ୍ କିଛି ବୟସ ହେଲାଣି,
ଖୋଜେଁ ଆସି ମୋର ଅଟୋଗ୍ରାଫ୍ ।
କହିଲା ସେ, ଆପଣଙ୍କୁ ପ୍ରଥମ ଦେଖିଲି ।
ମୁ କହିଲି, ଏହା ଆଗୁ ତୁମକୁ ତ ମୁ ଚିହ୍ନିଥିଲି
ତୁମେ ଥିଲ ଚେତନାରେ, ଏବଂ ପୁଣି
ମୋ' ଲେଖାର ଗାରେ ।
ବୁଣିଥିଲ ଜାଲ ତୁମେ ବୁଢ଼ିଆଣୀ ପରି,
ମୋର ପ୍ରତି ସବୁଜ ଅକ୍ଷରେ ।
ଦେଖା ହେଲା, ଭଲ ହେଲା ।
ଦେଖୁଚ ତ ନୁହେଁ ହାତୀ ଘୋଡ଼ା,
ନୁହେଁ ମୁଁ ଜିରାଫ୍ ।
ସାହିତ୍ୟର ଦର୍ପଣରେ ସେ ଦିନର
ପ୍ରୋଦ୍‌ଭିନ୍ନା କିଶୋରୀ
ଖୋଜେଁ ଆସି ଆଜି ଅଟୋଗ୍ରାଫ୍ ।।

ସେ କହିଲା, ଆପଣଙ୍କ କଥା—
ବସି ଭାବେ ପ୍ରାୟ ସବୁବେଳେ ।
ମୁଁ କହିଲି, ଭାବେନା ମୁ କୌଣସି ଜଣକୁ,
ସାମାନ୍ୟକୁ ବିଶେଷ ନ କରେ ।
ତୁମକୁ ମୁଁ ଚିହ୍ନେ, ମାତ୍ର ତୁମେ ନୁହଁ ।
ତୁମ ପରି ବହୁ ସ୍ୱର, ପୁଣି ବହୁ ମୁହଁ,
ତୁମର ସମସ୍ତ ଶ୍ରେଣୀ, ତୁମର ସମୂହ
କରେ ମୋତେ ପ୍ରାଣୀନ, ଚଂଚଳ ।
ମୁଁ ଖୋଜେନା ଜଣେ କାରେ, ସାଫ୍ ।
ସେ କହିଲା ଅଳ୍ପ ହସି, ମୁଁ ଖୋଜୁଁଚି ସାର୍
ଆପଣଙ୍କ ଆଜି ଅଟୋଗ୍ରାଫ୍ ।।



ଜାନୁୟାରୀ ୧୯୬[illegible]

# ଲାଲ ସ୍କୁଟର

ଶୂନ୍ୟରେ ଲାଲ ସ୍କୁଟର ଛୁଟିଛି
ଧର ମୋତେ ପଛୁ ଭାଇ,
ଧର ମୋତେ ଭାଇ ଅତଳ ଗର୍ଭେ
ଯିବା ଆଗୁ ଆମେ ପଡ଼ି ।
ତଳେ ତ ମୃତ୍ୟୁ, ଚର ବସ୍ତୁତ ;
ଯାହା କିଛି ଛଡ଼ାଇଛି
ହୋଇଅଛି ଶେଷ, ସବୁ ବସ୍ତୁତ
ଯାଏ ଯାଏଁ ତାହିଁ ବୁଡ଼ି ।
ତୁମର ଶବଶ୍ରୀ-ଆଖିରେ ଦେଖେଁ ମୁଁ
ସାମନାର ଆଇନାରେ
ସେ କେଉଁ କେଲାର ସାପ-ଖେଳା ଦେଖି
ଭୟ ଓ ବିସ୍ମୟରେ
ଫୁଟି ଉଠିଥିଲା ସେଦିନ ଯେ ରେଖା
ବନ୍ଧୁ ଶତକର ସ୍ୱରେ,
ଜାଂଗଲଙ୍କର ଖେଳା ଦେଖୁଥିଲେଁ
ଯେବେ ଆମେ ଭାବାବେଗେ ।
ହରଣ-ଶିକାର ଆଡେ ।
ମୂର୍ଦ୍ଧେ ମାରୁଥିଲ ତୁମେ ଖୋଜୁଥିଲ
ହତ ଆଉ ଆହତରେ ।
ବୁଲି ଜଂଗଲମାନେ ।
ସ୍କୁଟରର ଗ୍ଲେଟ ଦର୍ପଣେ ଦେଖେଁ
ସେଇ ଅଁଖି ପଛୁ ମୋରେ
ସହସା ଡଂକିମାରେ ।।

ସ୍କୁଟର ଛୁଟିଛି ଅଜଣାରୁ ଜଣା
ଶୂନ୍ୟରୁ ନାଦ ତୁଳେ ।
ସ୍କୁଟର ଛୁଟିଛି ଖର୍ଯ୍ୟକ ବେଗେ
ନୀଳ ସହରର ତଳେ ।
କିଟ୍ ବ୍ୟାଗ୍‌ରେ ସବୁ ଅଛି ଠିକ୍
ନା—ଆଉ କିଛି ଲୋଡ଼ା ?
ସଂଗେ ତ ଅଛି ଖାଦ୍ୟ ପାନୀୟ
ସ୍ୟାଂଡ୍‌ଉଇଚ୍‌ର ପୁଡ଼ା ।
ଏବଂ ତ ଅଛି ଟୁରିଷ୍ଟ ମ୍ୟାପ୍,
ସରାଇଖାନାର ସୂଚୀ,
ଏବଂ ରହିଛି ପ୍ରେମାଂଚକର ପତ୍ରିକା, ବହି କିଛି ।
ସବୁ କିଛି ଗୃହିଁ ପୁଣି ଲୋଡ଼ା ନାଇଁ,
ଲୋଡ଼ା ଖାଲି ନିବୃତ୍ତି ।
ଦେହ ଓ ଅଦେହ, ଜଣା ଓ ଅଜଣା
ଭୁଲି ଗୃହେଁ ଖାଲି ମୁହିଁ—
ନିଜକୁ ବାତିଲ କରିବାର ସେଇ ଚରମ ମିନଟ୍‌ଟିଇ
ନାମ ଯାର ଅସ୍ଥିତ ।।

ହୁଏତ ଆମେ ବା ହୋଇଅଛୁଁ ଛଡ଼ା
ଯେଉଁଠାରେ ଥିଲେ ତହିଁ ।
ହୁଏତ ଜମାଙ୍କୁ ସ୍କୁଟର ଗୃଲନ
ଦେଲିଁ ସମନ୍ୱିତ କରି !
ତଥାପି ରହିଛି 'କାରଣ' ଯାହା ତ
ଆଗକୁ ନିଏ କଢ଼ାଇ ।
ଯା କରେ ମୁଁ ସବୁ ସ୍ଥିତିର ବେଢ଼ାରେ
କର୍ମର ଭୀମରଥ ।
ସବୁ ଭାଂଗି ଚୂରି ଚଢ଼େ ମୁଁ ଯେ ନୂଆ
ଅଦେହର ଜ୍ୟାମିତି ।
ନାମ ଯାର ଅସ୍ଥିତ ।।

—ସେପ୍ଟେଂବର, ୧୯୭୦



# ଉପକଥା

ସେ ଏକ ଅଦ୍ଭୁତ ମୁହଁ ଦେଖାଦେଲା
ଏକ ସପ୍ତାହକେ,
ଉପକଥା ଇଲାକାରୁ ।
ଖଂଡାଧାର ପରି ଯାର ନାକେ
ଝରି ପଡୁଥିଲା ମୁକ୍ତା-ଫଳ
ଉପଧାର ପରି, ଦୁଇ ତଟିନୀର ।
ଏବଂ ପୁଣି ଲୋକକଥା, କିମ୍ବା ଇତିହାସ—
ଏକ କଳା ହ୍ରଦର କୂଆର
ପରି ମଂଡିଥିଲା ସେ ମୁହଁକୁ ଅପୂର୍ବ ଆଲୋକେ ।
ବାଂଲାର ମୁହଁ ପରି ।
ଅବା କେଉଁ ଦରଭୁଲା କାହାଣୀର
ଆର୍ଦ୍ର ଗୃହାଣୀରେ—
ଫୁଟିଥିଲା ଯେଉଁ ମୁହଁ
ନବବସ୍ତ୍ର ତଳେ ।
ଅବ୍ୟକ୍ତ ଅଗୁରୁ ଗଂଧେ
କାଠର ଆଧାରେ ।
ଏବଂ କହୁଥିଲା ଯାହା ଏକ
ଯଂତ୍ରଣାର କଥା
ତା' ଆଖିର ମୁଦ୍ରିତ ଫଳକେ ।
ହଠାତ୍ ସେ ଦେଖାଦେଲା
ଦିନେ ସାପ୍ତାହିକେ ।
ମନେହେଲା, ଦୂର ଦେଶ ଗ୍ରାମରୁ
ଉଡ଼ି ଆସି କାହିଁ କେଉଁ କପୋତଟିଏ
ଝରି ପଡ଼ି ପରେ ଏଠି ନିଃଶବ୍ଦେ ରାସ୍ତାରେ ।
ଏବଂ ସେ ଯନ୍ତ୍ରଣା ହାଇମାରେ
ବସି ଦୂରେ ବିଦ୍ୟୁତ୍‌ଖୁଂବ ପରେ,
ଗଂଗାଧାରେ, ଉଡ଼ି ଉଡ଼ି ଆସିବ ସେ ତେପାନ୍ତର ଦେଶୁ
ଅନୁସରି କେଉଁ ଏକ ଜାହାଜ-ମାସ୍ତୁଲ ।

ଏବଂ ଆସି ଥକା ମାରେ ଏଠି ଏଇ ଆଉଟ୍‌ଗ୍ରାମ ଘାଟେ ।
ଏବଂ ଫେର ଉଡ଼ିଯାଏ ତେଣାଝାଡ଼ି ଟିକିଏ ନକଟେ
ଭଂଗାଭୁଣ୍ଟା କ୍ଲାଇଭ୍‌ର କବଂଧ ଆଡ଼କୁ ।
ଆଖିର ପଂଝାରେ ରଖି ମୃତା କପୋତୀକୁ ॥

ସେ ଏକ ଅଦ୍ଭୁତ ମୁହଁ ଦେଖାଦେଲା
ଧନେ ସାପ୍ତାହକେ ।
(ତାପରେ କୌଣସି ଦୈନକେ)
ତା ଆଖିର ସ୍ୱପନେ ବହୁ ବହୁଲତା ।
ଉପକଥା ଇଲାକାରୁ ଆଣିଥିବା ଯଂତ୍ରଣାର କଥା ।
ସେ କେଉଁ ପବନ ସୁର
ତକ୍ତ ସ୍ୱାଦେ ଭର ।
ଲୋକକଥା ଦେଇଥିଲା ଯାରେ ଏକ ଅପୂର୍ବ ପୂର୍ଣତା ।
ହଠାତ୍ ସେ ଫିକା ଦେଖାଯାଏ ।
ଏ ରାସ୍ତାର ଚୌଡ଼ା ବୁକ୍‌ଷ୍ଟଲେ ।
ପ୍ରତ୍ୟହର ହଲେ
ଖେଳର ଅପେକ୍ଷ ପର ।
ଏବଂ ସେ ଅଦ୍ଭୁତ ମୁହଁ
ହୁଏ ପୁଣି କଠିନରୁ କଠିନ,
ଜଟିଳରୁ ଜଟିଳତର ମର୍ମୀ ମୁହଁ ଭଳି ।
ଏବଂ ମନେହୁଏ
ମହମରେ ଢଳା ଏକ ଗୁଁଡରେ ଢଆର
ସେ ଯେପରି କେଉଁ ଏକ ସ୍ମୃତିରହିଁ ଗୁପା ।
ଏବଂ ତା ଭିତରେ ଫୁଟିଉଠେ ଖୁଣି ଆଖିପର
ପରିଷ୍କାର ସଫା
ସେ ଘାଉଆ ଜଖମୀ ଚଳନ୍ତା
ପିଂଧି ଏକ ଝଲମଲ ଜରିର ମୁକୁଟ ।
ଠିକ୍ ଯା ସେ ମୁହଁର ଓଲଟା ॥

—ସେପ୍ଟେମ୍ବର, ୧୯୭୧



# ମେଘ

ତୁମର ସତ୍ତାର ଶୃଙ୍ଗେ ଏପ୍ରିଲର ନବ ନୀଳ ମେଘ ।
ତୁମର ଭୟାର୍ତ୍ତ ମନେ ଅଗ୍ନନକ ଝଡ଼ର ଉଦ୍‌ବେଗ ।
ମନେହୁଏ ଏକଇ ପ୍ରବାହ,
ବୈଶାଖର ଖର ରୌଦ୍ର,
ଶ୍ରାବଣର ଶ୍ୟାମ ବାରିବାହ ।
ଦୁହେଁ ଏକ, ପୁଣି ଦୁହେଁ ସ୍ୱତନ୍ତ୍ର ଆବେଗ ।
ଏକ ଗତି ଧାରା ।
ଏକ ବିନ୍ଦୁ ଛାଡ଼ି ଅନ୍ୟ ବିନ୍ଦୁ,
ଏକ ଶୃଙ୍ଗରୁ ଅନ୍ୟ ଏକ ଶୃଙ୍ଗ ।
ମୁଁ ଏକ ଶ୍ୟାମଳ ସତ୍ତା,
ହୁଏଁ ମେଘ, ଏକତ୍ରେ ବା ସୁନର୍ଜନ ଭୂମି,
ମୁଁ ଏକ ବିଚ୍ଛିନ୍ନ ସତ୍ତା
ଭଲ ଲାଗେ ଚିରଦିନ ଉଠିବାକୁ ଜମି
ତୁମ ସତ୍ତା ଗୃରଦାଗ ଘେର ।
ସମସ୍ତ ଦେହକୁ ନେଇ ଅଦେହର ସୀମା ଅତିକ୍ରମି ।
ମୁଁ ଧ୍ରୁ ପ୍ରଦୀ, ମୁହୂର୍ତ୍ତର ନୀଳ କେନ୍ଦ୍ର ଭାଗେ ।
ଯାଯାବର, ପୁଣି ଚିର ସ୍ଥିର ।
ସେଇ ଶ୍ୱେତ ଅଶ୍ୱର ଶବାର
ନୂତନ ଦେଶର ଲାଗି ଛୁଟିଚ ଯେ
କେଉଁ ଶେଷ ସୀମାନ୍ତର ନବ ଅନୁରାଗେ ।
ପଛୁ ଡାକେ ନିଃସଙ୍ଗ ପ୍ରହର
ଅନନ୍ତ ଆକାଶ ଭରି ଶୁଣେ ମୋ ନିଜର
ବିକଳ ଓ ବିପଶ୍ୱିତ ସ୍ୱର ।
କାନ ପାତିଛି ଶୁଣିବାକୁ ନିଜ ପଦ ଧ୍ୱନି,
ନୂପୁର ତୋରଣ ଆଡ଼େ, ଅବା କେଉଁ ଦୂର ପ୍ରତିଧ୍ୱନି
ଆଦିମ ନୂପୁର ।।

ଯାଉ୍ ରହେ ମୋର ଶୂନ୍ୟତା ।
ସମଗ୍ର ସମୁଦ୍ର-ତୃଷ୍ଣା, ମୋ ଯୌନତା ।
ଯାହା ମୋର ମୂଳ ଆତ୍ମମତା,
ସଂପୂର୍ଣ୍ଣ ନଜର ।
ଯାହା ମୋତେ ଦେଇ ପରେ ଅନ୍ୟଠି ହଜାଇ,
ଫେରିବାର ପଥ ନାଇ ମାଗେ ।
ମୋର ଶେଷ ମୋ'ର ହିଁ ଆରଂଭ ।
ମନେହୁଏ ଏଇ ମୋର ସୂର୍ଯ୍ୟାସ୍ତର ସ୍ତମ୍ଭ,
ହେବ ହେବ କାଲିକାର ଉଦୟ ତୋରଣ ।
ଏବଂ ସର୍ବଶ୍ରେଷ୍ଠ ଜୟର ଝିଲ୍ଲଣ—
ଯାହା ପାଇଁ ମୁହିଁ ରାତ ଜାଗେ ।
ମୁଁ ଏକ ଶ୍ୟାମଳ ମେଘ,
ଛୁଇଁ ଯାଏ ଯାହା
ତୁମର ସତ୍ତାର ଗିରି ଶୃଂଗେ ।।

—ଅକ୍ଟୋବର, ୧୯୭୦



# ନାଗଭୂଷଣ

'ତୁମେ ତ ସାପର ନାମ,
ଅଭିନସ୍ତ ମାନେ ତୁମ ସାପ ।'
ତୁମର ଅଙ୍କୁର କ୍ରୋଧ ଜଳଉଠେ ଯଥା ଅଭିଶାପ
ଅସଂଖ୍ୟ ଶିବିର ଘେରି,
ଜାଳି ବହୁ ଅଜଣା ଶତ୍ରୁରେ,
ସୂର୍ଯ୍ୟର ଅଂଗାର ପରି, ଭସ୍ମ କରି ବହୁ ନକ୍ଷତ୍ରରେ,
ଏବଂ ବହୁ ଉପଗ୍ରହ,
ଜ୍ୱଳମାନ ଧାତବ ଅକ୍ଷରେ;
ଏବଂ ବହୁ
ଅଦୃଶ୍ୟ, ଅଜଣା ସତ୍ତା, ବ୍ୟକ୍ତିହୀନ ବହୁ ମନୁଷ୍ୟରେ—
ଯାରେ କେବେ ଦେଖି ନାଇ, ଯାରେ କେବେ ଜାଣି ନାଇ,
ପରିଚୟହୀନ ।
ତୁମର ଅଜାତଶତ୍ରୁ କ୍ରୋଧର ତୃଷାରେ ହେଉଚି ନିଶ୍ଚିହ୍ନ ।
ଆଖିର ପଲକେ ।
ଅଶାଂତ ଏ ଉପମହାଦେଶେ ପ୍ରାଂତରୁ ପ୍ରାଂତକେ ।
ଖଂଡ ଖଂଡ ବିଦୀର୍ଣ୍ଣ ଭୂଗୋଳ ।
ମୂକ ମ୍ଳାନ ଇତିହାସ । ମ୍ଳାନ ସାରି ମୃତ ଓ ଧୂସର
ନକ୍ଷତ୍ରର ଜଳେ,
ତୁମେ ପୁଣି ଫେରିଆସ, ଉଦୟର ରକ୍ତିମ ମୁହୂର୍ତ୍ତେ ।
ଯହିଁ ମୂର୍ତ୍ତ ହୁଅଇ ଅମୂର୍ତ୍ତ,
ଅତୀତର ରୂପାଂତର ସର୍ତ୍ତେ ।
ବର୍ତ୍ତମାନ ଲଭଇ ବିଗ୍ରହ ।
ତୁମେ କି ସେ ମହାକାଳ ? ଅତୀତର କରୁଣ ଦଶାହ ?
ଯାହା ପାଇଁ ମୁଂଡିତ ମସ୍ତକେ କରୁଛୁଁ ଅପେକ୍ଷା
ତୁମ ଫାଶିଖୁଂଟ ତଳେ ?
କିଏ ତୁମେ କହ ।
ପ୍ରସ୍ଥାନର ପଦ ଶବ୍ଦ ନା ଆଗାମୀର
ମସିଦୀପ୍ତ ଏକ ହାତଲେଖା !!

## ନେପଥ୍ୟ

ତୁମର ନେପଥ୍ୟଗୃହ୍ରେ
ଖୋଜିବୁଲେ ତୁମକୁଇ ଘୂରି,
ସକାଳର ଦିଗ୍‌ବଳୟ ପଟେ ।
ପୁଣି ଧୂସର କୁହୁଡ଼ି—
ଘେରି ଉତ୍ସବ ପ୍ରାଂଗଣେ,
ଯହିଁ ତୁମେ ଧରିଥିବା ବଂଦାଣର ସ୍ୱର୍ଣ୍ଣଥାଳୀ ପରେ
ଏକ ବିଂଦୁ ଶୁଭ୍ର ଅଶ୍ରୁ ପରି
ତୁମେ ଶୋଭପାଅ ।
ଅପରୂପ କରୁଣ ଔଜ୍ଜ୍ୱଲ୍ୟେ ।
ତୁମେ କି ସେ ସକାଳର ଉଦ୍‌ଭିନ୍ନ କୋରକ
ନୂତନ ସୂର୍ଯ୍ୟର ଲାଗି ନେଇଥିଲା ଯିଏକି ଶପଥ,
(ଜାଗି ଜାଗି ଯାଉ ରାତି ଯାକ ?)
ତୁମେ କି ସେ ସୁନିର୍ଜନ ସୀମା
ଡେଇଁ ଯାହା ଧୂସର ଦ୍ରାଘିମା
ଆପଣାର ଦ୍ୱିଧାର, ଭୟର
ଗୃହିଁଥିଲା ଛୁଇଁବାକୁ
ସମୁଦ୍ରର ଅଦ୍‌ଭୂତ ଗାରିମା—
ଏବଂ ସେଇ ନିଭୃତ ସକାଳ ?
କୋଣାର୍କର ସୂର୍ଯ୍ୟ ପରି ଯାହା ଡେଇଁ ପଡ଼େ
ସମୁଦ୍ରନେପଥ୍ୟୁ
କାରୁକାର୍ଯ୍ୟ-ପରିପୂର୍ଣ୍ଣ ଶିଳାର ମଂଦିରେ,
ଯେଉଁପରି ଏକ କଅଁଳା ବାଛୁରି ?
ଖୋଜିବୁଲେଁ ମୁଁ ନିଭୃତଗୃହ୍ରେ
ପ୍ରକାଶିତ ପ୍ରେକ୍ଷାପଟେ
ତୁମକୁ ଓ ତୁମର ଅଭାବେ ।
ପୁଣି, ଉଭୟଙ୍କୁ ଏକାନ୍ତ ସୁଂଦରୀ ।।

—ଅକ୍‌ଟୋବର, ୧୯୭୦



# ସମୁଦ୍ରକୂଳ

ସମୁଦ୍ର ଲାଗୁଚି ମୋତେ
ଏକ ଫିକା ଫଟୋଗ୍ରାଫ୍ ପରି,
ନିବିଡ଼ ଶୂନ୍ୟତା ମଧ୍ୟେ,
ଝାଉଁବଣ ଖସିରେ ବତୁରି ।
ଏବଂ ତାର ଚକ୍ ଚକ୍ ବାଲି
ବାଲି ଖାଲି ବାଲି,
ମୁହେଁ ଯାହା ଛୁଏ ନାଇ ଦେଇ,
ଛୁଏନା ଯା ଦାନ୍ତରେ ଛୁଂଡାଇ
ଫିଂଗି ଦେଇ ପଡ଼ିଆର ଦୁବଶିଷା ପରି
ଥୁ ଥୁ କରି ।
ତା ଢେଉର ଫସ୍‌ଫରସ୍
ଏବଂ ଯାହା କିଛି ଲୁଣି—
ହୁଏତ ଜମାଟ ବାନ୍ଧେ ମୋ ଦେହର
ନଶ୍ୱର ଉତ୍ତାପେ ।
ମୁଁ ତା' ପାରେନା ଜାଣି ।
ତଥାପି ମୁଁ ଢେଉ ଗଣି ଗଣି
ଚିହ୍ନିବାକୁ ଚେଷ୍ଟା କରେ ତାକୁ ।
ଏବଂ ତାର ଲୁଣର ଆଂଗୁଠି
ମୁଠାରେ ମୋ ଚିପି ଧରି
ଚନ୍ଦନଚନ୍ଦନା କରି ଫିଂଗେ ବାଲିରେ ଏକାଠି ।
ଯେ ବାଲିରେ ଲାଗିଥାଏ କେଉଁଠି
କେଉଁଠି ଅଳତାର ଗାର,
କାହିଁ ପୁଣି ମଥାର ସିଂଦୂର

ଯେଉଁଠାରେ ଶବଦ ସବୁ ଝରିଆସେ
ନାଲି ଓଠ ତଳେ
ଝାଇପକାଯ୍ତ୍ ପଦ ପରି
ଲାଲ ରିବନ୍‌ରେ,
ସାଦା ସାଦା କାଗଜ ଉପରେ ।
ଯେଉଁଠାରେ ନୀଳରଙ୍ଗ ଗାଢ଼ନୀଳ ହୁଏ ।
ଅସବୁଜ ହୋଇ ଉଠେ କ୍ରମଶଃ ସବୁଜ ।
ଶ୍ୱେତ ହୁଏ ଶୁଭ୍ର ।
କଳା କଳା ।
ଏବଂ ନାଲି ପାଇଁ ଲୋଡ଼ା ହୁଏ ଗୋଟାଏ
ସୂର୍ଯ୍ୟାସ୍ତ ।
ଅରୁଣ ଉଠାର ଯାହା ଅନ୍ୟ ଏକ ମୁହଁ,
ଏବଂ ବନ୍ଧୁ ସ୍ମୃତିର ଲୋତୁଅ ।।

ସମୁଦ୍ର ଲାଗୁଛି ମୋତେ
ଏକ ଫିକା ଫଟୋଗ୍ରାଫ ପରି
ଝାଉଁବଣ ଖରାରେ ବଢୁଛି ।
ସର୍ଯ୍ୟ ହୁଏ ଅସ୍ତ ।।

—ସେପ୍ଟେମ୍ବର, ୧୯୭୦



# ଉତ୍ତର ମେଘ

ଏଠାରେ ଉତ୍ତରମେଘ ଫେରିଆସି ସାଗରନେପଥ୍ୟୁ
ପ୍ରିୟାର କଜ୍ୱଳନୀରେ ସ୍ନାନକରେ,
ଐରାବତ ପରି ।
ଏବଂ ପୁଣି ଭାଂଗିବାକୁ ଚାହେଁ ତାର ନୀଳପଦ୍ମବନ,
ଖଂଡଖଂଡ କରିବାକୁ ମୃଣାଳ ପାଖୁଡ଼ା ।
ସୁରହସ୍ତୀ ସ୍ୱର୍ଗୁ ନିର୍ବାସିତ ।
ସେ ମେଘ ଯେ ଆସେ କେବେ ଋଷ୍ୟଶୃଂଗ ହୋଇ
ଗୀତବାଦ୍ୟେ ସୁରସ୍ପିତ ବେଶ୍ୟାଂକ ନୂପୁରେ,
ଜରତାର ପ୍ରବାଳ-ଡଂଗାରେ ।
ଏବଂ ଶେଷେ ହୁଏ ସମାହିତ
ଶାଂତାର କବଷ୍ଣସ୍ନିଗ୍ଧା ପଣ୍ଡି ଶ୍ୟାମଳାଭ
ସରଯୂର ଶୁଭ୍ର ଜଳଧାରେ ।
ଭାଂଗିଦେଇ ପରଂପରା ଚୂଡ଼ା ।
( ବିଖଂଡକେ କରି ଆଂଠୁକୁଡ଼ା )
ଭୁଲିଛି ସେ ଯୁଗଯୁଗ ତପଶ୍ଚିହ୍ନ ଦେଇ
ଦେଖିଥିବା ମଣିଷ ଜୀବନ ।
ଦେଖିବାକୁ ଚାହେଁ ସିଏ ସ୍ୱଚକ୍ଷୁରେ
ପୋଛିଦେଇ ସ୍ୱପ୍ନର ଅଂଜନ—
ଜୀବନକୁ । ଏବଂ ସେଇ ଜୀବନର ପ୍ରଖର ମଧ୍ୟାହ୍ନ,
ଏବଂ ତାର ନିବିଡ଼ ଶର୍ବରୀ ।
ସେ ଚାହେଁ ଦେହର ମୁକ୍ତ ତପସ୍ୟାର ବଲ୍କଳ ଛିଡ଼ାଇ ।
ସେ ଚାହେଁ ମନର ମୁକ୍ତ ଜ୍ୟାମୁକ୍ତ ଧନୁରୂପ ପରି ।
ସେ ଚାହେଁ ଆପଣା ସତ୍ତା ମୁକ୍ତ, ସଚେତନ,
ଏବଂ ଦିଗଂବର ।
(ଯା ଚିର ନୂତନ, ତାହାହିଁ ତ ସତ୍ୟ ଓ ସୁନ୍ଦର ।)
ସେଇ ତ ବୃଷ୍ଟିର ପଥ, ତାହାହିଁ ତ ମାର୍ଗ ବିସୃଷ୍ଟିର ।

ସେଇ ତାର ଧସ୍ତବତରଣ
ପର୍ବତରୁ ପର୍ବତରୁ ।
ମେଘକନ୍ୟା ଦେଉଛନ୍ତି ପଥପାଶେ ତାର ହୁଳହୁଳି ।
ମେଘ ଆସେ, ମେଘ ଆସେ ଉତ୍ତର ଦିଗନ୍ତରୁ
ଆବେଗେ ଉଚ୍ଛୁଳ ।।

# ନିସର୍ଗ

ସେ ଏକ ଉଚ୍ଛନ୍ନ ରତ ।
ସବୁବେଳେ ରଖିଥାଏ କିଛି ଦେବା ବାକି ।
ଏବଂ ସମସ୍ତ ପାଇବା ନାଏ ନଗାଡ଼ି ଝିଟକ ।
ସେ ଆସେ ମୋ ଜନ୍ମଭୂମି ତରଂଗେ ତରଂଗେ
ସମସ୍ତ ଶିଉଳି-ତଟ ତୃଣଭୂଇଁ ଅଂଗେ ।
ଅଳକାନନ୍ଦାର ପର ତୁଷାର ବନ୍ୟାରେ ।
ତଥାପି ତାଙ୍କୁ ଦେବା ମଧ୍ୟେ ରଖିଥାଏ
କିଛି ସେ ତ ବାକି ।
କାରଣ ସେ ରତ ପୁଣି ଏକାଗ୍ର ବ୍ରତ ।।

ପୁଣି କେବେ ଦେଖାଦିଏ ମୋ ମାନସ ହ୍ରଦେ
ଯେଉଁପରି ନୀଳସରସ୍ୱତୀ । (୧)
ସମସ୍ତ ବାଙ୍ମୟ ସତ୍ତ୍ୱା ଉଦ୍ଧାଳ ତଥାପି,
ପ୍ରଜ୍ଞାର ଶିଖରେ ମୋର ଯାହାର ବସତି ।
ତୁଷାରଠୁ ବଳି ଶୁଭ୍ର କମଳ ଦଳରେ
ତାର ନୀଳ ପଦଯୁଗ ଥାପି ।
ମୁକ୍ତାମାଳା ଗଳେ
ତଳେ ପ୍ରତିବିମ୍ବ ବିମ୍ବେ, ସତର୍ପଣେ ଅତି ।
ସ୍ୱର୍ଗର ସପ୍ତର୍ଷି-ହ୍ରଦେ ହିମାଦ୍ରିର ମୁକୁଟ ଯେମିତି ।
(ଫୁଟାଏ ଯେ ଘରେ ପଦ୍ମ ସୂର୍ଯ୍ୟ ତଳୁ ଆଲୋକ ନକ୍ଷେପି ।) (୨)
ପୁଣି କେବେ ଆସେ ସିଏ ମୋର ଅଂତରୀକ୍ଷେ
ଯେଉଁପରି ନୀଳାଂଗୀ ପୂର୍ଣ୍ଣିମା ।

ସୃଷ୍ଟିଆଡ଼େ ମୁଠା ମୁଠା ଅଭ୍ରରେଣୁ ବାଂଟ ।
ଏବଂ ନିମିଷେ ହଜାଇ ଦିଏ ମୋର ସବୁ ସୀମା,
ସରହଦ, ସତ୍ତ୍ୱର ଦ୍ରାଘିମା ।
ଏବଂ ମୋତେ କରେ ସଂଜ୍ଞା-ହୀନ, ନାମହୀନ
ଏକ ରୂପାଂତର ।।

ସମୟର ବାଂଧୁଏ ବିସ୍ତୃତ ।
କାରଣ ସେ ରଦ୍ଧ ପୁଣି ଏକାଗ୍ର ବିରତ ।।

—ଡିସେଂବର, ୧୯୭୧



ଜରତା = ଜନୈକା ବେଶ୍ୟା । ବିଭାଂଡକ = ଋଷ୍ୟଶୃଂଗ ପିତା ।

ଶାଂତା = ଦଶରଥ କନ୍ୟା,ପରେ ଋଷ୍ୟଶୃଂଗ ପତ୍ନୀ ।

୧। ନୀଳସରସ୍ୱତୀ—ଏହାଂକର ସ୍ୱତଂତ୍ର ସ୍ୱରୂପ ବର୍ଣ୍ଣନା ଓ ପୂଜାର୍ଚ୍ଚନା ବାର୍ଦ୍ଧ ଶାସ୍ତ୍ରରେ ଅଛି ।

୨। ସପ୍ତର୍ଷି-ହ୍ରଦ = କାଳିଦାସ ହିମାଳୟର ଶିଖର ଦେଶରେ ସପ୍ତର୍ଷି-ସର ଅବସ୍ଥିତ ବୋଲି କୁମାର ସଂଭବରେ ଲେଖିଛଂତି । ଏହା ଏତେ ଉଚ୍ଚ ଯେ ସୂର୍ଯ୍ୟ ତଳୁ କିରଣ ମାରି ଏ ସରୋବରରେ ପଦ୍ମମାନଂକୁ ପ୍ରସ୍ଫୁଟିତ କରାଇଥାଂନ୍ତି ।

# ରୋସନାରା

(ଢାକା ମହିଳା କଲେଜର ପ୍ରଥମ ବାର୍ଷିକ କଳା ଶ୍ରେଣୀର ଛାତ୍ରୀ ରୋସନାରା ବେଗମ ନିଜ ବୁକୁରେ ମାଇନ୍ ଖଂଜି ପଶ୍ଚିମ ପାକ୍ ବାହିନୀର ଏକ ଟ୍ୟାଂକ୍ ଉପରେ ଝାଂପ ମାରି ସେ ପ୍ୟାଟନ୍ ଟ୍ୟାଂକ୍‌ଟାକୁ ଉଡ଼ାଇ ଦେବା ସଂଗେ ସଂଗେ ନିଜେ ମଧ୍ୟ ଛିନ୍‌ଛିନ୍ନ ହୋଇ ଯାଇଥିଲା··· )

ମୁଁ ତାର ଶବକୁ ଧରି କାଂଧେ ମୋର
କରୁଅଛି ବିଶ୍ୱ ପ୍ରଦକ୍ଷିଣ,
ମୁଁ ଏକ ଉନ୍ମତ୍ତ ରୁଦ୍ର କାଂଧେ ମୋର ଦେହ ପ୍ରାଣହୀନ ।
ବୁଲେଁ ମୁଁ ନିଭୃତଗୃହ ଏଠି ସେଠି, ସମଗ୍ର ଭୁବନେ ।
ଏସିଆର ପଥେ ପଥେ ଆଫ୍ରିକାର ନିଙ୍ଗଡ଼ ଅରଣ୍ୟେ ।
( ପୁଣି ଦକ୍ଷଯଜ୍ଞର ଅଂଗନେ )
ବିକଳ ନିଖିଳ ଧରି, ଖଂଡ ଖଂଡ ଅଗ୍ନିଶିଳା ଇଥର ଗଗନେ
ଝସିପଡ଼ି ହୁଏ କକ୍ଷଚ୍ୟୁତ ।
ମୋ ପାଦର ମୁଦ୍ରା କଂପେ, ହିମାଦ୍ରିର କଠିନ ଶିଳାଖଣ୍ଡେ ।
ମୋ ପରେ ତା ହିମ ଦେହ, ମୁକ୍ତ ତାର ଦୀର୍ଘ ନୀଳକେଶ,
ସର୍ବାଂଗ ମୋ ଛୁଇଅଛି ଯେପରି ବା ସାପରଇ ଶ୍ୱାସ ।
ଏବଂ ତା ଶିଥିଳ ହାତ ଝୁଲିପଡ଼ି ମୋର ପଛପଟେ
ଦରପୋଡ଼ା ମାଟିର ଆଡ଼କୁ
ଛୁଟେ ମୋର ସଂଗେ ସଂଗେ ଯେଉଁପରି ପବନ-ଗୁଳିତ,
ତାଳ ରଖେ ମୋ ଅସ୍ଥିର ପଦେ, ତାଳମାନେରେ ଅଟ୍ଟହାସ୍ୟେ
ତାର ଦୀର୍ଣ୍ଣ ବୁକୁ
ନିଭୃତ ଶବ୍ଦରେ ।
ଏବଂ ମୋତେ ଭୟତ୍ରସ୍ତ କରେ ।
ସ୍ଥିର ହୋଇ ଛିଡ଼ା ହୋଇଯାଏଁ, ନିଜ ଗୁଏଁ, କାକୁସ୍ଥିତିଚକିତ ।
(ରୁଦ୍ର ହୁଏ ପାଉଁଶଠୁ ବଳି ପରିହତ)
ଏବଂ ଶୁଣେ କିଛି ଶବ୍ଦ ନାଇ, ଟୁଣୁ ଟୁଣୁ ଅବଶିଷ୍ଟ କେତେ ପଟି କାଚ
ତାର କ୍ଷୀଣ ପଳିତ ହାତର, ଅବିରତ ଯାହା ବାଜୁଥିଲା ମୋର ନେପଥ୍ୟେ,
ମୋର କାନେ କାନେ, ହଠାତ୍ ଯେ ମୌନ ହୋଇଯାଏ ।

ଏବଂ ତାର ବ୍ଲାଉଜ୍‌ର ସର୍ବଶେଷ ଅଂଶ
ଶାଢ଼ୀହୀନ ଦେହରୁ ଛୁଂଡ଼ି ମୋତେ କରେ ପୁଣି ରୁଦ୍ଧଶ୍ୱାସ
ତୀବ୍ର ଯଂତ୍ରଣାରେ ।
ମନେହୁଏ ଏକ ବଡ଼ ନୀଳ ସରୀସୃପ ସତେ ଅବା ତାର ଅକ୍‌ଟୋପାସ
ବଂଧନରେ ମୋତେ ଥରେ ବାଂଧିବାକୁ ଚାହେଁ ।
( ପଲେ ପଲେ ମୃତ୍ୟୁର ପାଶରେ)
ଏବଂ ଶେଷେ ତାଂକ ହୋଇପଡ଼େ ମୁହିଁ ତାର ମହାନଗ୍ନତାରେ ।।

ଘୂରି ବୁଲେଁ ଏଣେ ତେଣେ, ପବନେ·ପବନେ,
ମେରୁରୁ ମେରୁକୁ, ଏକ ଶୃଂଗରୁ ଅନ୍ୟ ଏକ ଶୃଂଗେ ।
ଏକ ନୀଳ ତରଂଗରୁ ଅନ୍ୟ ଏକ ନଥର ତରଂଗେ ।
ୟୁରୋପର ହୃତ୍‌ପିଂଡରୁ ଜାପାନର ଶ୍ୟାମଶସ୍ୟ ରଂଗେ ।
ସବୁରେଁ ମୁଁ କିଏ ନେବ ସୁରଭିତ ଏ ପବିତ୍ର ଦେହ !
ଯାହାକୁ ମୁଁ କରିଛି ବହନ, ଯାହାକୁ ମୁଁ କରିଛି ଧାରଣ,
ଯାହା ମୋର ଧର୍ମ, ଆତ୍ମା, ପ୍ରାଣ ।

କିଏ ନେବ କହ, କହ, କହ ।
ଏ ଶବ ଯେ ଭସି ହୋଇଉଠେ ହିମାଳୟଠାରୁ,
ହୋଇପଡ଼େ ଏକାଂତ ଦୁର୍ବହ ।
ଯଦିଚ ତା ଫୁଲ୍ଲଠୁ ଉଶ୍ୱାସ—ଏବଂ ମନେହୁଏ ତାହା ନାହିଁ—
ତାହା ମୋର ଏକ ଅଂଶ, ଏକଇ ମୋ ନୃଞ୍ଜ ଶ୍ୱାସ ।
କିଏ ନେବ ଏ ନାରୀର ଅଂଗ
କହ କହ ଅଂଗ, ବଂଗ, ମଗଧ, କଳିଂଗ,
ଗାଂଧାର, ଦ୍ରାବିଡ଼
କେ ଛୁଇଁବ ପରିପୂର୍ଣ୍ଣ, ମହତ୍ତର, ବୃହତ୍ତର ଏ 'ବାଂଲା ଦେଶ' ?
ଉତ୍ତର ଯେ ପାଏ ନାଇ, ଉତ୍ତର ଯେ ସ୍ୱାର ନାଇ,
ଚିରଦିନ ଏହା ଖାଲି ପ୍ରଶ୍ନ ।

ଚିରଦିନ ଏହା ଖାଲି ଏକ ପରୁରବା
ଅଶାଂତ ଅବୁଝ କଂଠେ, ଅମାନିଆ ଓଠେ
ବହୁ ସହସ୍ର ଆଖିର ବେଢ଼ାରେ,
କେଉଁ ଜୈନ୍ୟ ସଂଶୟବାଦର,
ଅବା ବୌଦ୍ଧ ଦୁଃଖବାଦ ସ୍ୱରେ ?

କିଂତୁ ମୋ ପ୍ରାଣରେ
ନୁହେ ସେ ସଂଦେହ ଚିହ୍ନ, ନୁହେ ସେ ତ ଦୁଃଖ,
ଆନଂଦର ଶିଖା ପରି ସେ ଯେ ଜଳେ, ଜଳେ ।
ସେଇ ଶବ ଆନଂଦ-ସ୍ୱରୂପ ।
ଦୁଃଖର ପ୍ରତିମା ନୁହେଁ, ସଂଶୟର ନୁହେ ଅଂଧକୂପ ।
ନୁହେ ତାହା ଗ୍ଲାନି ମୂର୍ଖର ।
ସେ ଯେପରି ମଣିଷର ଚିରକାଳ ନୂଆ ରୂପାଂତର ।
ସେ ସେଇ ମୁହୂର୍ତ୍ତ, ଯାହା ଲାଗି ସମୟର ସମୁଚ ତୋରଣ
ମୁହୁର୍ମୁହୁ ଜାଗି ରହେ, ସିଏ ଏକ ପ୍ରେମର ହରଫ୍
ମଣିଷକୁ ପରସ୍ପରେ ଏକତାର ସୂତ୍ରେ ବାଂଧିବାର ।
ଯୁଗେ ଯୁଗେ ଦେଶେ ଦେଶେ ।
ସେ ଯେ ଉତ୍ତରଣ ।
ଧର୍ମଠାରୁ ସେ ଯେ ବଡ଼, ଈଶ୍ୱରଂକୁ ବଳି ବରାଭୟ,
ସେ ଯେ ଭାଷା, ସେ ପରା ବାଙ୍ମୟ ।।

ତଥାପି ନୀରବ କିଆଁ ? କହ କହ ହେ ନିଖିଳ ବିଶ୍ୱ !
ଦାକ୍ଷିଣାତ୍ୟ ଓ ଉତ୍ତରଖଂଡ
କହ କହ ରୁଷ୍ ଓ ଇଂଲଂଡ,
ଯୁକ୍ତରାଷ୍ଟ୍ର ଏବଂ ମୂକ ଫ୍ରାନ୍ସ ।
ଏ ଶବରୁ ମୁକ୍ତ ମୋତେ କରିବ କି ନାଇ,
ଭରି ତୁମେ ଦେଇପାର ଗୋଟିଏ ନିଃଶ୍ୱାସ ଯେଉଁଥିରେ,
ଏବଂ କରିପାର କିଛିଟା ଉଶ୍ୱାସ ।
ତଥାପି ଉତ୍ତର ନାହିଁ, ଛୁଟେ ମୁହିଁ ଊର୍ଦ୍ଧ୍ୱ ମହାକାଶେ, ଗ୍ରହାଂତରେ—
ଏ କୃତଘ୍ନ ମଣିଷର ଜଗତ ବାହାରେ ।
ଚଂଦ୍ରେ ଓ ମଂଗଳେ ।
ବୁଧ ଆଉ ଦୂର ଶନିଷ୍ଟରେ ।
ଶୁକ୍ରର ବଳୟେ, ସ୍ୱର୍ଗର କକ୍ଷରେ ।
ଛୁଟେ ମହାକାଳେ,
କାଳାଂତରେ, କଳ୍ପାଂତ, ପରାର୍ଦ୍ଧେ, ପଦ୍ମ, ମନ୍ୱାଂତରେ ।
ମୋର ଗଣ ପଛେ ପଡ଼ିରହେ ।
ଛୁଟେ ମୁହିଁ ଜନ୍ମୁ ଜନ୍ମାଂତରେ । ଅସତ୍ୱର କୂଳେ ।
ପୁଣି ଫେରିଆସେ ବିକଳ ଭୂଇଁରେ ।

ଦଗ୍ଧ ମୃତ୍ତିକାରେ ।
ଖସିପଡ଼େ ରେସନାରୁ ଖଂଡ ଖଂଡ ହୋଇ ।
ମୁଁ ପାରେନା ରକ୍ଷା କରି ।
ନାଭି ତାର ଛୁଟିପଡ଼େ
ପ୍ୟାରିସ୍‌ର ସହରତଳୀରେ,
ହଦେଦ ଶ୍ରମିକବସ୍ତି ଅତଳ ଗଂଡରେ ।
ଯୋନି ତାର ସଢ଼ି ଗଲେ ନ୍ୟୁୟର୍କ ସହରେ
(ଇଷ୍ଟ ନଦୀ ତୀରେ ତୀରେ ଯେଉଁଠାରେ ଜନ୍ତସଂଘ
ପ୍ରାସାଦଟା ଥରେ ।)

ଏବଂ ତାର ପଳିତ ଚିବୁକ
ଶାଗୁଣାଂକୁ ଫାଂକ ଦେଇ ନୂଆ ଦିଲ୍ଲୀ ଗଣିକା ପଡ଼ାରେ
ଖସି ପଡ଼େ ଗୃହିଁରହେ ମୁହିଁ ହତବାକ୍ ।
ତା'ର ନୀଳ କେଶଦାମ, ନିରଂଧ୍ର ଚିକୁର
ଛିନ୍ନ ଭିନ୍ନ ଚିରାଳର ସ୍ୱର୍ଣ୍ଣତଂତୁ ପରି
ଗଳିପଡ଼େ ପେକିଂ ମହଲେ ।
( ଯେଉଁଠି ସ୍ୱାହୁଆ ଖାଁ ବ୍ୟାଟେରୀରେ ଭରିଯାଏ ଦମ୍
ହରଦମ୍ ।)
ତାର ଶିଥିଳ ବାହୁ ଖସିପଡ଼େ ଉଲ୍‌କା ଖଂଡ ପରି
ରୁଷର ସୀମାଂତେ,
ଜଂଘ ପଡ଼େ ନୀଳ ନଦ ପ୍ରାଂତେ, ମୃତ ପ୍ୟାଗୋଡ଼ାର ତଳେ ।
ଆଖି ତାର ଖସି ପଡ଼ି ଦୀପ ପରି ଜଳେ
ବହୁ ଦୂରେ କୁତବ ମିନାରେ ।
ରେସନାରୁ ଖଂଡ ଖଂଡ ହୁଏ ।
ସଢ଼େ ନାଇ କେବଳ ତା ବୁକୁ,
ସଢ଼େ ନାଇ ଦୁଇ ପୀନ ସ୍ତନ—
ଯେଉଁଠି ସେ ଖଂଜିଥିଲା ଲୁହାର ମାଇନ୍
ଯେଉଁଠି ସେ ରଖିଥିଲା ଲୁଗ୍ଇ ତା ଶେଷ ଅସ୍ତ୍ରଟିରେ,
କରିବାକୁ ସାମନା କମାଣ ଏବଂ ଶେଷ ଦୁଃସମନ ।
ସେ ସ୍ତନ ଯେ ଶୋଭପାଏ ପଦ୍ମ ସୌରଭରେ
ନିର୍ଜୀବ କଂକାଲ ବୁକେ ମୋର କାଂଧ ପରେ ।
ରେସନାରୁ ! କମାଣର ମୁକାବିଲା
ରିଯାଏ କମାଣରେ ।

ପୁଣି ତାହା ଛଡ଼ା ଆଉ ଏକ ମୁକାବିଲା କରାଯାଇ ପାରେ—
ଆତ୍ମବିଲୁପ୍ତିରେ, ନିଜର ସମଗ୍ର ସତ୍ତା ବିଗୁଡ଼ି ଦେବାରେ
ନିଜର ବାହାରେ ।
ନିଜର ଓଜନ ଭୁଲି ହଜିଯିବା ଦ୍ୱାରା ଅସତ୍ତାରେ ।
କରିଅଛ ତୁମେ ସେଇ ମୁକାବିଲା ।
ଭୁଲିଅଛ ନିଜ ଭାର ।
ସତ୍ତାର ଦଂଶନ ।
ତୁମ ଭାରେ କିଂତୁ ଏଣେ ମୁହିଁ ଭାଂଗିପଡ଼େ
ଆଜୀବନ ।
ମୁଁ କବି, ମୁଁ ରୂପକାର ।
ମୋର ଏତେ ମୁକ୍ତି କାହିଁ ?
ଧୂଳିଶାୟୀ କରେ ମୋତେ ମୋର ଓ ତୁମର ଓଜନ ।
ଏବଂ ଏକ ଅସୀମ ଯଂତ୍ରଣା,
ଯାହାଁ ପାଇଁ ତୁମେ ଦାୟୀ ।
କେବଳହିଁ ତୁମେ ।
ତୁମେ ମୋର ଶେଷ ବଂଦୀଶାଳା,
ମୁହିଁ ତୁମ ଶେଷ ବଂଦୀ ସିନା !!

—ଅପ୍ରିଲ, ୧୯୭୧



# ମୁଜିବୁର ରହମାନ

ଏବେ ବି ଇଦ୍‌ର ଜହ୍ନ ତେଉର ଅଛି,
ରୌଦ୍ରଦଗ୍ଧ ଧୂ ଧୂ କାରବଲା ।
ସାକିନାର ମରୁତୃଷ୍ଣା କରିବାକୁ ଗୃହେଁ ମୁକାବିଲା
ମଣିଷର ନିଷ୍ପାପ ଖୁନ୍‌ର ।
ତାଜା ଲହୁ ମୁକ୍ତ ମଣିଷର, ନୂତନ ବାଂଲାର ।
ଯେ ଖୁନ୍‌ର ନାମହିଁ କୁର୍ବାନ,
ସେ ଖୁନ୍‌ର ନାମ ଇନସାନ ।
ଯେଉଁ ଖୁନ୍ ଗୋଟିଏ ଆହ୍ୱାନ—
ମସ୍‌ଜିଦ୍‌ର ଗଂବୁଜରୁ, ମିନାରୁ ମିନାରେ—
ଯେଉଁପରି ସଂଧ୍ୟାର ଆଜାନ୍ ।
ଯାହା ପୁଣି ବାଂଶତଲା, କଦମତଲାର
ଚଂଡୀମଂଡପରେ
କପୋତାକ୍ଷୀ କାଟକେଂଦୁ ଜଲେ,
ସର୍ବଶେଷ ଶ୍ୟାମାସଂଗୀତର
ପଦାବଲୀ ସ୍ୱରେ
ମହାକାଲୀ କରାଲୀର ସ୍ତବ ।
ପୁଣି ରାଧାବିନୋଦ ମଂଦିରେ
କଂସାରର ଯାହା ଆବାହନ,
କାକୁସ୍ଥ ବାଉଲ କଂଠେ ।
ଯାହା କେଉଁ କାଜଲଦୀଘିର ପାରେ
କର୍ଣଫୁଲି ତେସ୍ତା ଜଲଧାରେ,
ବାସମତୀ ଧାନ ଖେତେ ଖେତେ
ବେନାମୀ ପକ୍ଷୀର ଡାକ, ରୁଦ୍ର ଓ ମୋହନ
ମଂଗଲ ଉଜ୍ଜ୍ୱଲ ଏକ ଦେଶ
ପିଂଧି ଫଣୀମନସାର ବେଶ
ଖୋଜେ ତାର ଚାଂଦ ସଦାଗରେ,
ଯାହାର ରୂପେଲି ଡଂଗା ଜ୍ୟୋତ୍ସ୍ନାର ତରଂଗେ
ଆଣିଦେବ ମୁକ୍ତିର ସଂଦେଶ ।

ଛଲ ଛଲ ପଦ୍ମା ଓ ମେଘନା ।
ଯାର କୂଳେ ଆମ୍ବ ଆଉ ଖଜୁରୀ ବାଗରେ
ଫେରାର ଫୌଜ କରେ ଶତ୍ରୁର ସାମନା ।
ଥମ ଥମ ମାଠ, ଘାଟ, ପାଟ ।
ଦମ ଦମ କୁମିଲ୍ଲା, ଶ୍ରୀହଟ୍ଟ ।
ଏବଂ ସୀମାନ୍ତ-ଜିଲ୍ଲା ଗୁରୁ ଯଶୋହର ।
ଢାକା, ନୂଆଖାଲି,
କୁଷ୍ଟିଆ, ଖୁଲ୍‌ନା ।
ଅତୀତର ସବୁ ଗ୍ଳାନି ଭୁଲି, ହାତ ଧରାଧରି
ହୋଇ ଗୁଲିଛନ୍ତି ନୂତନ ସୀମାନ୍ତ ।
ଛାତ୍ର ଓ ସୈନିକ, କରାନୀ, ଶ୍ରମିକ,
ଚାଷୀ, ମାଝି ପୁଣି ମଧ୍ୟବିତ୍ତ ।
ବାଂଲାର ନାରୀ ।
ମୟୂରାକ୍ଷି ହୁଅଇ ଦ୍ୱିଧାର, *
ଶକ୍ତ, ମୁକ୍ତ, ଶାନ୍ତ, ଉଦଗାର ।
ଏ କାହାର ପଟୁଆର ? ମଣିଷର ଦୁର୍ଜୟ ପାଦର
ଏଇ ତ ଆବାଜ ।
ଚମକେ ଇମାମବାଡ଼ା, ଶିହରେ କବର ।
ଷ୍ଟେସନ, ବନ୍ଦର ।
ହୋଟେଲ, ସରାଇଖାନା, ଷ୍ଟିମର, ଜାହାଜ ।
ସବୁଆଡ଼େ ଗୋଟିଏ ସ୍ଲୋଗାନ—
ମଣିଷର ଜୟଯାତ୍ରା, ଆଜାଦର ସୈନ୍ୟ ଆଗୁଆନ୍ ।
ଧ୍ୱନି ଏକ, ପଥ ଏକ, ମୂଲକ ତମାମ—
'ଖତମ ଖତମ ।'
ଦୁଷମନ ହୋଇଚ ଖତମ ।
ଚୂରମାର ହୋଇଚ ଟ୍ୟାଂକ ଓ କମାଣ ।
ଉଡ଼ାଇ ହୋଇଛି ଦଆ ସେତୁମାନ,
ପୋତାଶ୍ରୟ, ବିମାନର ଘାଟି,
ଗଢ଼ିଥିଲୁଁ ଦେଇ ଯାହା ଯାନ୍,
ଯାହା ଭାଂଗି ମନେହୁଏ ଦେହରୁ ଚେନାଏ
ସତେ ଅବା ହେଲା ଲୋକସାନ ।
ନୂତନ ବାଂଲା ଆସେ ଉଠି, ପୋଡ଼ା ବାରୁଦରୁ,

* ମୟୂରାକ୍ଷି—ପୂର୍ବବଙ୍ଗଳାର ନଦୀ କର୍ଣ୍ଣଫୁଲି, କପୋତାକ୍ଷି ମଧ୍ୟ ।

ପାଉଁଶଗଦାରୁ, ଜଳା ଦହେ
　　　　　　ସୂର୍ଯ୍ୟରଥ ପଣ ।
ନୂତନ ବାଂଲା ଆସେ ଫୁଟି ଚଟ୍ଟଗାଁଓ
　　　　　　ଅସ୍ତ୍ରାଗାର ଚୂର୍ଣ ।
ଆଜାଦ୍ ବାଂଲା ଆସେ ଛୁଟି
　　　　　ଖେତ, ମାଠ, କାରଖାନା ଚିର ।
କବଜା କରି ସହର ଓ ଗ୍ରାମ ।
ତାଲୁକା, ପ୍ରଗଣା, ଜିଲା, ମହକୁମ ।
ଏକ ଆଲ୍ଲା, ଏକଇ ଈଶ୍ୱର ।
ଏକଇ ଆକାଶ, ଏକ ଧରାତଳ, ଏକ ଭାଷା
(ସଯ୍ତାନ ଖାଲି ଭିନ୍ନ ଭିନ୍ନ
ଭିନ୍ନ ଭିନ୍ନ ଖାଲି ଦୁଷ୍ମନ )
ସମଗ୍ର ବାଂଲାଦେଶ ସତେ ଅବା ଗୋଟିଏ ସଲାମ ।
ସାତ କୋଟି ମୁକ୍ତ ବୁକୁ ସତେ ଏକ ଜଂଗ୍ ,
ଗୋଟିଏ ସଂଗ୍ରାମ ।
ମୁଜିବୁର ଯାର ନାମାଂତର ।
ମୁଜିବର ଯାର ଖାସ୍ ନାମ ॥

—ଜୁନ୍, ୧୯୭୧



# ମଣିଷର ମୁହଁ

ପୃଥିବୀ ଶ୍ୟାମଳତର
କରି ତୁମେ ଆଉ ଥରେ କହ –
ସମସ୍ତ ଭୂଗୋଳଟା ଯେ ଏକଇ ସେ ମଣିଷର ମୁହଁ ।
ସେଇ ଏକ ମଣିଷର ମୁଖ ।
ଏଠାରେ ଗଂଗୋତ୍ରୀ ତଟରେ
ଶାଳଗ୍ରାମ ଗୋଟାଇବା ବେଳେ
ଦେଖିଥିଲି ଯାହାକୁ ମୁଁ ସୂର୍ଯ୍ୟର ସମ୍ମୁଖ—
ଧୂଆ ଉଜ୍ଜ୍ୱଳ ସକାଳେ ।
ସେଇ ମୁହଁ ଫୁଟି ଉଠେ ଭଲ୍‌ଗା ଜଳେ
ବଲ୍‌ଗା-ମୃଗ ପଛେ
ଧାଇଁବାର ବେଳେ ମୁଁ ଯେ
ବଲ୍ଲମ ହାତରେ,
କ୍ଷେତ, ବଣ, ଉପତ୍ୟକା ପଥେ,
ଲୁହିନ ପାହାଡ଼େ ।
ସେଇ ଏକ ମଣିଷର ମୁହଁ
ସମଗ୍ର ପୃଥିବୀ ଧରି ।
ଶିଳ୍ପ ପରି ସମୁନ୍ନତ, ସ୍ୱଚ୍ଛ ।
ଫୁଟି ଉଠେ ଚେତନାରେ
ଏକ ଚିତ୍ର ଉଚ୍ଚ,
ମଣିଷର ଚିତ୍ରପଟ,
ଯହିଁ ବନ୍ଧୁ ସୁଅ
ହୁଅଇ ଆଲୋକ ସନ୍ଧି,
ଏକ ମହାସାଗର-ପ୍ରବାହ ।

କେବେ ତା ଆଶ୍ଚର୍ଯ୍ୟ ହସେ ଫାଟି ପଡ଼େ ।
କେବେ ପୁଣି ହୁଏ ତା ଅସହ୍ୟ
ଶୋକର ଚେହେରା ।
ହୁଏ ଲହୁ, ହୁଏ ତାହା ଲୁହ ।
ସେଇ ଏକ ମଣିଷର ମୁହଁ ।।

ସେଇ ଏକ ମଣିଷର ସ୍ୱର
ଆଶ୍ଚର୍ଯ୍ୟ ଉଜ୍ଜ୍ୱଳ ଶବ୍ଦେ
ମୋତେ କରେ ସର୍ବଦା ଅସ୍ଥିର ।
ସେଥିପାଇଁ ଡେରି ରହେ କାନ ।
ହେଉ ତା ଆଶାର ତାନ୍,
ଅବା କେଉଁ ଦୁଃଖର ଆବାଜ
ଭୟଂକର ଯନ୍ତ୍ରଣାର ।
ମୁଁ ତାର ଅପେକ୍ଷା କରେ
ଯେଉଁପରି ସଂଧ୍ୟା ଆଜାନ୍ର
ଅପେକ୍ଷା କରେ ସେ ଦିନର ଶେଷ ମୁସାଫିର୍ ।।

ଏଠି ଏଇ ମନୁଷ୍ୟର ସ୍ରୋତେ
ବହୁ ମଧ୍ୟେ ଏକର ସଂକେତେ
କଂଠ ଖୋଜେ ଆଉ ଏକ କଂଠ ।
ସ୍ୱର ଖୋଜେ ସମସ୍ୱର,
ହାତ ଖୋଜେ ଆଉ ଏକ ହାତ ।
ସମ ଦୁଃଖ ସୁଖରେ ଉତପ୍ତ,
ଏବଂ ବଳିଷ୍ଠ
ମଣିଷର ସ୍ପର୍ଶ ।
ହିମାଦ୍ରିର ଚୂଡ଼ା ଟପି
ପୀଡ଼େ ପରସ୍ପରେ
ଦୁଇଗୋଟି ପ୍ରସାରିତ ହସ୍ତ ।
ଏକ ରୁଷ, ଅପରଟି ଏ ଭାରତବର୍ଷ ।।

ଏକ ଦୁଃଖ ଉଭୟର ବୁକୁ
ବାଂଧେ ଆସି ବର୍ତ୍ତ ପରି ।
ଏକ କ୍ରୋଧ ଜାଳେ ଉଭୟଂକୁ ।
ଏକ ଆଶା, ନାମ ଯାର ଶାଂତି,

ଏକ ସ୍ୱପ୍ନ, ନାମ ଯାର ଜାଂତ,
ଏକ ପଥ, ନାମ ଯାର ମୁକ୍ତି
ମସଗୁଲ କରଇ ଦୁହିଂଙ୍କୁ ।
ପୁଣି, ଏକ କରୁଣ ରାଗିଣୀ
ସୁଦୂର ପୂର୍ବରୁ କାହିଁ କଶାଂତର ଶୀର୍ଣ ଖଓଲନ୍
ପର ଉଭୟଙ୍କୁ କରେ ମର୍ମାହତ ।
ଯାହା ପଦ୍ମା ମେଘନା ଲହରେ
ଭାସି ଆସେ ଗଂଗା-ବକ୍ଷେ ।
ଭଲ୍‌ଗା ପ୍ରାଣେ ଯାହା ଢେଉ ତୋଳେ ।
ମଣିଷର ବେଦନାର ଧ୍ୱନି,
ଛିନ୍ନ ଭିନ୍ନ ମଣିଷର ମୁହଁ,
ରକ୍ତେ ଲାଲ ତାହାର କୁଟୀର ।
(ସେ ମୂର୍ଚ୍ଛିତ କରୁଣ ରାଗିଣୀ
ଛିନ୍ନ ଭିନ୍ନ ଯେଉଁପର ମୟୂରାକ୍ଷୀ ଲାଲ ଜଳବେଣୀ ।)
ହିମାଦ୍ରିର ଦୁଇ ପଟେ ଦୁଇ ବୁକୁ
ଦୁଃଖେ ଦଏ ହାଣି ।
ଦୁଇ ହାତ ହୋଇ ଆସେ ମୁଠା ।
ପଶୁତ୍ୱର ହ୍ରେସା ଥମେ, ସଯ୍ତାନ ପଳାଇବା ପଂଥା
ଖୋଜି ବୁଲେ ।
ସ୍ଥିର ହୁଏ ଇତିହାସ ଯାହା ଚିର 'ସାକ୍ଷୀର ଦେବତା' । *

—ଅଗଷ୍ଟ, ୧୯୭୧

* କଟକରୁ ସଦ୍ୟପ୍ରକାଶିତ ଏକ ବଂଗଳା କବିତାପତ୍ରର ବାଂଲାଦେଶ
ସଂଖ୍ୟା ପ୍ରତି ଲକ୍ଷ୍ୟ ରଖି ଲିଖିତ ।

# ନିର୍ବାଚନ

କାଂଥବାଡ଼ୁ ଜଣାଯାଏ—
ସମାଗତ ସେ ମହାର୍ଘ ଦିନ ।
ଯେତେବେଳେ ବର୍ଣ୍ଣାଶୁଦ୍ଧି ପୂର୍ଣ୍ଣ
ପୋଷ୍ଟର ଓ ଇସ୍ତାହାରେ ଭରିଯାଏ ଗଳିକଂଦିମାନ ।
ବାଦ୍ୟର ତୋଫାନେ ଯେବେ ହୁରୁଡୁରୁ ହୁଏ
ସହର, ମଫସଲ, ଖେତ, ବାଡ଼ି, ମଠ, ଖଣି,
ଝାଲି ଓ ଖମାର ।
ପାର୍କ, ମଶାଣି, ଓ ସିନେମାଘର ।
ଯେତେବେଳେ ବହୁ ଚିହ୍ନ, ବହୁ ନାମାବଳୀ
ସମାନଂଦୀଠାରୁ ଘିଅଦୀପ, ଚର୍ଖା ଓ ଦୁହାଁଳୀ-
ଗାଈ, ସୂର୍ଯ୍ୟ, ତାରା, ଛତା, କଲମ, ଲଣ୍ଠନ ।
ହଳଧର, ଦାଆ ଓ ମୁଗୁର, ଝକଡ଼, ଲଂଗଳ,
ଧାନଶିଂଷା, ମୁଚକୁଂଦ ଫୁଲ
ସମସ୍ତ ଘୋଷଣା କରେ ଆସିଛି ସେ ଦିନ ।
ଅହଂସାର ମାଣବସା,
ସତ୍ୟର ଯା ଶେଷ ବଡ଼ଓଷା ।
(ଗ୍ଲୁଡ଼ଖାଇ ହୋଇବା ଆଗରୁ)
ଯେତେବେଳେ ସମାଧିରୁ ଗାଂଧିଜୀଂକ ହାଡ଼ ହୋଇ ଖୋଲା
ପୁଣି ଥରେ ହୁଅଇ ଉଛଳା,
ଏବଂ ତାଂକ ତତ୍ତ୍ୱାବଳୀ ଓ ତିନୋଟି ବାନର
(ଜଣେ ଯିଏ ବୁଜିଥାଏ ଆଖି, ଜଣେ କାନ, ଅନ୍ୟଟି ଅଧର
ଦୁଇ ହାତ ପାପୁଲିରେ ଚପି ।)
ଆସିବ ସେ ଦିନଟି ଅଦ୍ୟାପି ।
ଯେତେବେଳେ ପ୍ରେତମାନେ ଆସଂତ ସ୍ୱର୍ଗରୁ
ଟ୍ରକ୍‌ରେ ବୋଝେଇ ହୋଇ ।
(ମାର୍କସ-ଲେନିନ, ଗାଂଧି, ହୋ-ଚୀ-ମିନ୍, ଟେ'ଙ୍ଗ)

ଇସ୍କୁଲର ପିଲା ଏବଂ ଠିକାଦାରଂକ ସ୍ୱରରେ !
ଯେତେବେଳେ ପ୍ରତଶ୍ରୁତିମାନ
ହୁଏ ତାଳଗଛ ।
ଯାହା ଥିଲା କାଲି 'ଦେଖିବା', 'ବୁଝିବା', ଅବା ଦୋ ଦୋ ପାଂଚ
ଆଜି ତାହା 'ଜରୁର୍ ହୋଏଗା' ।
କଥାବାର୍ତ୍ତା ମାନେନା ବଲ୍‌ଗା
ଭାଂଗି ସବୁ କଡ଼ ଓ ବର୍ଗା ଛୁଇଁବାକୁ ଚାହେଁ ଆସ୍‌ମାନ ।
ଆଜି ସେଇ ମୌସୁମ୍, ଆଜି ସେଇ ଦିନ
ଯେତେବେଳେ ଉକାଶଠୁ ଉକ ମଗାଯାଏ ।
ଯେତେବେଳେ ପୋଛିବାକୁ ଗରବର ମୁହଁ
ଇସ୍ତିକରା ରୁମାଲଟା ଧାଏଁ ।
ଏବଂ ସବୁ ହଂଜଡ଼ାଂକ ମୁହେଁ
ବନାବ୍ୟସ୍ତେ ହରବୋଲ ହୁଲହୁଲି ଆଦି ଦେଇ ହୁଏ ।
ଶବ୍ଦ ଆଜି ପଲ୍ଲବିତ, ଦାଡ଼ିଯୁକ୍ତ ହୁଏ ଅର୍ଥଯାକ,
ବାକ୍ୟମାନେ ପିଂଧଂତି ପଗଡ଼ି, ଖଂଜି ତହିଁ କଟ୍ଟଟା ଯମକ ।
କମା, ପୂର୍ଣ୍ଣଛେଦ ମାସେ ନେଇଛଂତି ସବେତନ ଛୁଟି,
ଯାହା ଦେଖି ଶୁଣି
ଅସହାୟ ବାନର ତିନୋଟି
ଜଣେ ଯିଏ ବୁଜିଥିଲା ଆଖି, ଜଣେ କାନ, ଅଧର ଅନ୍ୟଟି,
ତିନିହେଁ ଏକାଠି ମିଳି ସର୍ବ ସମକ୍ଷରେ
ଦିଅଂତି ଆରଂଭ କରି ଉଲଂଗ ନର୍ତ୍ତନ ।
ଆସିଛି ସେ ଦିନ
ଛ' ମାସିଆ ଛୁଆପରି ଏକାଂତ ଅଧିନ ॥

—ଫେବୃୟାରି, ୧୯୭୧



# ନାଗଭୂଷଣ

ଧରିତ୍ରୀର କାତର ପ୍ରାର୍ଥନା ଅଂତେ
ଦେବତାଏ ସୃଷ୍ଟି କଲେ ଗୋଟିଏ ମଣିଷ,
କାଳରୁ ଯେ ଜନ୍ମ ହୋଇ ଛୁଏଁ କାଳାତୀତେ,
ଯା ମଧ୍ୟରେ କାଳ କରେ କାଳାଂତରେ ନିଃଶବ୍ଦେ ପ୍ରବେଶ ।
ଶନି ଦେଲେ ତାକୁ, ଆରକ୍ତ ନୟନ କୋଣୁ
ଦୃଷ୍ଟିର କୃପାଣ ।
ବୃହସ୍ପତି ଦେଲେ ବୁଦ୍ଧି, ଶୁକ୍ର ନ୍ୟାୟ ।
ସମ୍ମୁଖେ ରହିଲେ ବୁଧ, ଜୀବନର ଯେଣୁ
ପୂର୍ଣ୍ଣଚ୍ଛେଦ କେବଳ ଜୀବନ ।
ଶେଷ ଦେଲେ ଢାଳି ସବୁ ବିଷ ।
ଇନ୍ଦ୍ର ଦେଲେ ଗଜଦଂତ ଆସନରୁ ଉଠି
ଆଂଜୁଳେ ଅମୃତ ।
ଏବଂ ଦେଲେ ବଜ୍ରର ବଳୟ,
ଦଧୀଚିର ହାଡ଼େ ଯାହା ଗଢ଼ା ।
ଜନ୍ମ ନେଲା ପୁତ୍ର ।
ସମୟର ଜରାୟୁରେ ଜନ୍ମ ନେଲା
ଆଶ୍ଚର୍ଯ୍ୟ ମୁହୂର୍ତ୍ତ ।
ଦେବତାଏ କଲେ ଶଂଖଧ୍ୱନି ।
ଅସୁରେ ପିଟିଲେ ଢକା ।
ହିମାଦ୍ରିର ପ୍ରଭାମୟ ଔଷଧି ଆଲୋକେ
କିରାତ-କିରାତୀ କଲେ ଗୁହାରେ ନର୍ତ୍ତନ ।
ସବଂହରା ମଣିଷର ହେଲା ହେଲା ଆଜି
ଆରଂଭ କି ଧରାରେ ପାର୍ବଣ ! !

ତେଣେ କଂଠୁ ଯୋଟିଗଲା ଏକ କଳା ଗ୍ଲାନି
କୁଶୀଦଜୀବୀର ଘରେ,

ଜଂଗଲ କାଂତାରେ ।
ସାହୁକାର ଦୁର୍ମଂତ ମହଲେ
ତା' ଖାତାର ଅଂକ ସବୁ ହେଲେ ହୁଲଚଲ ।
ମୁନାଫାର ଲଫାପାରେ ଉଡ଼ିଗଲା ଜଉର ମୋହର ।

ଗ୍ରାମଦେବତାଏ ଆଉ ଇଷ୍ଟଦେବୀଗଣ
ଉଭା ହୋଇ ଘରଣୀ ସ୍ତମ୍ଭରେ, ସପନେଇ
କହିଲେ, ଆସୁଚି ମାଡ଼ି ଘୋର ଅମଗଂଲ
ଜମିଦାରେ ମଣିଲେ ଆତଂକ
ଅଷ୍ଟମ ଗର୍ଭରେ ତେଣେ ଜନ୍ମଲଭେ ନୂତନ ଧନାଂକ
ଧ୍ୱଂସର ତାରିଖ ।।

ନଗରେ ନଗରେ
ଉଠିଲା ବାରୁଦ ଧୂଆଁ ଆକାଶକୁ ଘେରି ।
ଘୁଂଙ୍ଗର ପଗଡ଼ି ତଳେ ହୁଏ ମୁଂଡବ୍ୟଥା
ଯାହାର ଔଷଧ ନାଇ—ଏକ ଲାଲ ତାରାର ଲାଂଛଣା
ଲଂବଯାଏ ଏମୁଂଡ଼ୁ ସେମୁଂଡ ଆକାଶରେ,
ଏକୂଳୁ ସେକୂଳ ସମୁଦ୍ରର,
ପାହାଡ଼ର ନାସୀରୁ ନାସୀକୁ ।
ଧନାଂତର ଶେଯଯାମେ ଶେଯପରେ ଗଡ଼ୁଥିବା ପୃଥୁଳ ପେଟକୁ
ହଲାଇ କାନରେ କହେ କୋମଳାଂଗୀ ଅରୁଣ-ଉଦସ୍ତ
ଦେଖିଲି ଖରାପ ସ୍ୱପ୍ନ, ଲାଗୁନାଇ ଭଲ ।।

ଶାଗୁଣାଗୁଡ଼ାଏ କଥାଁ ହୋଇ ପଲ ପଲ
ବସନ୍ତି କୋଠାରେ,
ଏବଂ ବହୁ ଲାଲ ଲାଲ ଜନା ଉଡ଼େ ଫର ଫର
ଏଠି ସେଠି, ମଇଦାନେ, ଆମ ଗ୍ରାମ ପରେ ।
ତେଣେ କା'ର ସୁରସିକ୍ତ ଅଧରକୁ ଚୁମି
ଶୁଭେ ମୂଲ୍ୟହୀନ କଂଠ,—ଉଠମ ଉଠମ ।
ଶୁଭୁଚି ଆବାଜ, ଭୀଷଣ କଦମ ।
ଏ କି ଶବ୍ଦ ! ଏତେ ଶବ୍ଦ ଶିକୁଳି ଝଂକାର !
ମିଳଇ ଉତ୍ତର, ଭୟ ନାଇ । ଶୋଇ ପଡ଼ । ଆଜି ମୁଁ ପ୍ରହରୀ

ସବୁ କଂତୁ ଠିକ୍ ଅଛୁ ।
ଆଜି କଂତୁ କ୍ଲବ୍‌ର ଆସର ଜମିଥିଲା ବେଶ୍
ଗଂଭୀର ସଂଭୀର ।
ସେଠୁ ଯାଇ ଚଂଡି ମଂଦିରକୁ ସହଳ ଫେରିଚ ।
ଯାଇନି କୁଆଡ଼େ—ଯାହା ତୁମେ କରିଥା ସଂଦେହ ।
କଂତୁ ଆଜି ଭୀଷଣ ନାଗୁର ।।

ତେଣେ ଗ୍ରାମେ ଗ୍ରାମେ
ନୂତନ ଫୌଜ ଜାଗେ
ଅଦ୍‌ଭୁତ ବିକ୍ରମେ ।
ଶୁଭିଆଡ଼େ ଅସ୍ତ୍ର ଆବାଜ
ନଦୀର ନୂପୁର ପରି,
ଅସ୍ତ୍ର ବି ଅଛି ଏକ ମୁଲାୟମ ସ୍ୱର,
ପଥର ଖୋଲିଲା ପରି
ତୋଡିବାକୁ ନୂତନ ଦେଉଳ ।
ବନ୍ଧୁ ଝାଂଜ କରତାଳ ପରି
ବାଜି ଉଠେ ବନ୍ଧୁ ହତିଆର ।
ରମଝମ ଝମ ।।

ଅସଂଖ୍ୟ ଟାପୁର ଶବ୍‌ଦେ
ବାଜିଉଠେ ଦୁରଂତ କଦମ ।
ଖୁଣ୍ ଓ ଖରାପି
ଗଲାକଟା
(ଗୁଲିଚ ଗୁଲିବ ।)
ବୋମା ଓ ପିସ୍ତଲ
ଲାଲେ ଲାଲ
ରାସ୍ତାଘାଟ, ଲେକ୍ ଓ ମାର୍ବଲ ।
ଛାତ୍ର ଓ ଶିକ୍ଷକ
କିରାଣୀ, ଶ୍ରମିକ,
ବେପାରି, ପୁଲିସ୍,
ବୁଦ୍ଧିର ନେତୃତ୍ୱ ।
ଖତମ, ଖତମ ।
ମଣିଶର ଲାସ୍
ଧରଣୀକୁ କରେ ଯା ଉଶ୍ୱାସ

ପୁଣି ବଡ଼ ଘଣ୍ଟା ।
ମସ୍ମର ହଣାହଣି
ମୁଂଡକଟା—(ଗୁଲ୍‌ଚ ଗୁଲ୍‌ବ ।)
ହାଓ୍ୱାରେ ହିଁ ବିଷ ।
ବିଷର ହାଓ୍ୱା ।
ବିଷ ନଦୀ ଜଳେ, ପଲ୍ଲବ ମର୍ମରେ
ଖାଲି ବିଷ, ବିଷର ତାରିଖ ।
ତା' ଭିତରେ ଅଛି ବି ଅମୃତ ।
ନୀରବ କୁର୍ବାନ ।।

ଏବଂ ଏକ ବ୍ୟକ୍ତି-ହୀନ
ଦୃଢ଼ ଅଂଗୀକାର
ମଣିଷର ଚିରନ୍ତନ ଯାହାହିଁ ଦୈବତ ।
ତେଣୁ ଆମେ ନଂଗାମୁଂଡେ ଦେଇ ଜଳୋଦକ
କରୁଁ ଆଜି ବିଷର ତର୍ପଣ ।
ଯେଣୁ ଆମେ ଅମୃତର ନକଲି ସଂତାନ ।



—ଅଗଷ୍ଟ, ୧୯୭୧

# କାଲିଫର୍ଣ୍ଣିଆ ସାକ୍ଷାତ

କୁରୁବକ କଂଟା ନାହିଁ
ଲଗି ଯାହା ଚାରବ ପଣ୍ଡିତ,
ଏବଂ ତୁମେ ଅଟକାବ,
ଗୃହିଣୀ ପିଛକୁ,
ଏବଂ ମୁହଁ କରି ନତ
ଲୋଡ଼ିବ ସାହାଯ୍ୟ ମୋର,
ବଡ ବଡ ଗୃହିଣୀର ଛଳେ ।
ବରଂ ଗୁଲି ଠିଆ ହୋଇ
ସିଧା ହୋଇ
କିଛିକାଳ ଏଇ ବୁକ୍‌ଷ୍ଟଲେ
ପଢ଼ିବା ଦୈନିକ ସବୁ
କର୍ମଖାଲି ସ୍ତମ୍ଭଟା ନିରେଖି,
ଏବଂ ଖାପ ଖୁଆଇବା
ନିଜକୁ ତା ସଙ୍ଗେ, ସତର୍କେ ପରେଖି ।
ଦେଖିବା ବାଜିବ କି ନା କେଉଁଠାରେ
କାଲେ ଦରଖାସ୍ତ ।
ଭୂଗୋଳର ଶିକ୍ଷୟିତ୍ରୀ,
କିଂବା କେଉଁ ଏଲ୍. ଡ଼ି. ର ହସ୍ତ
କାହିଁ କିଛି ଖାଲି ଅଛି କିନା,
ତା' ପରେ କହି 'ଧନ୍ୟବାଦ'
କାଗଜଟା ରଖିଦେବା ।
ଏବଂ ଏକ ପତ୍ରିକା ପ୍ରଚ୍ଛଦ
ଦେଖିବା ଟିକିଏ ରହି, ସାମ୍ନା ମଲାଟେ
ଗୋଟା ଅଂକେ ଲିଖିତ ଦାମଟା ।
ଏବଂ ପୁଣି ରଖିଦେବା,
ପୁଣି ଟିକେ ଦେଖିବା ନାମଟା

ଜଣେ ଅଧେ ଲେଖକର,
ଗୋଟେ ଦ'ଟା ଲେଖାର ଶୀର୍ଷକ ।
ଏବଂ ପୁଣି ରଖିଦେବା
  ସ୍ପୃତ ହ୍ୱାପେ, ଷ୍ଟଲର ମାଲିକ
କହିବା ଆଗରୁ, ଏବଂ
ଫେରଯିବା ନିଜ ନିଜ ସ୍ଥାନେ ।
(ତୁମେ ଯିବ କୋଉ୍ବା ଆଡ଼େ
ମୁଁ ଯିବ କୁଆଡ଼େ ?)
କ ଯେ ଭାବ ଆସିଥିଲି
  ମନେ ନାହିଁ, ଗଲିଣି ମୁଁ ଭୁଲି ।
ତୁମେ କଂଚୁ ଯିବ ଠିକ୍ !
  ନା ଯିବ ନାହିଁ ଏତେ ଶୀଘ୍ର ଫେର !
ସିକ୍ସ ଅପ୍ ଆଜି ବଡ଼ ଡ଼େର,
ତାଲଚେର ଆସିନି ଏ ଯାକେ ।
ରାସ୍ତା ସବୁ ବୁଡ଼ିଛି ଅତଳେ
ନଷ୍ଟ ସବୁ ଫସଲ ବବାକେ ।
ଗାଆଁରେ ଜଳେନା ଚୂଲି ।
  ଗାଡ଼ିଗୁଡ଼ା ଏତେ କଆଁ ଲେଟ୍ ?
ଘଂଟା ଘଂଟା ଧରି ଲେଟ୍,
ଝାଲି ଲେଟ୍
ରେଜ୍ ଲେଟ୍ ।
ହେଇ ହେଇ ଫାର୍ଷ୍ଟ ବେଲ୍ ବାଜିଲାଣି ।
ସିଂଗଲ୍ ବି ଦିଆ ସରିଲାଣି ।
ଶୁଣାଯାଏ ଗାଡ଼ି ହୁଇସିଲ୍ ।
ଆଚ୍ଛା ତେବେ ପରେ ହେବ ଭେଟ,
ବାଇ—ବାଇ ।
ମାତ୍ର ମୁଁ କୁଆଡେ ଯିବ ?
କେଉଁଠିକି ଯିବାର ଯେ ନାହିଁ ।
ଫେରଯିବା ଆହୁରି ମୁସ୍କିଲ !

—ସେପ୍ଟେଂବର, ୧୯୭୧



# 'ଚେତନାର ବିଚ୍ଛେଦ' ଅଂତେ

[ଏ ଯୁଗର ଜଣେ ଶ୍ରେଷ୍ଠ କବି ଏଲିୟଟଂକର 'ଚେତନାର ସମନ୍ୱୟ' ଏବଂ 'ଚେତନାର ବିଚ୍ଛେଦ' ('Unification of Sensibility') ଏବଂ ('dissociation of sensibility') ନାମକ କାବ୍ୟତତ୍ତ୍ୱ ପ୍ରତି କଟାକ୍ଷ କରିବା ଏ କବିତାର ଉଦ୍ଦେଶ୍ୟ ନୁହେଁ । କାରଣ ମୁଁ ନିଜେ ମଧ୍ୟ ତାହାର ପ୍ରୟୋଗକର୍ତ୍ତା । ଏଲିଜାବେଥୀୟ ଯୁଗରୁ ଡନ୍, କାଓଲି ପ୍ରମୁଖ କବିମାନେ (ଯାହାଂକୁ ବେନ୍ ଜନସନ 'ମେଟାଫିଜିକାଲ କବିଗୋଷ୍ଠୀ' ନାମରେ ଅଭିହିତ କରିଛଂତି) 'ଚେତନାର ସମନ୍ୱୟ' ପ୍ରଣାଳୀ ଅବଲଂବନ କରିଥିଲେ । 'ଜଣେ ପ୍ରେମରେ ପଡ଼ିଥିବା ବେଳେ ସ୍ପିନୋଜା ବି ପଢ଼ିପାରେ, ପୁଣି ଟାଇପ୍‌ରାଇଟର ଶବ୍ଦ ଏବଂ ରୋଷେଇ ଘରୁ ଭାସିଆସୁଥିବା ତରକାରି ବାସ୍ନା ସଂବନ୍ଧରେ ମଧ୍ୟ ଯୁଗପତ୍ ସଚେତନ ଥାଇପାରେ ।' (ଏଲିୟଟ) ମାତ୍ର ସମକାଳୀନ ଓଡ଼ିଆ କବିତା କ୍ଷେତ୍ରରେ ଏଇ କାବ୍ୟ ସୂତ୍ରଟିର ବେଳେବେଳେ ଯେପରି ଅପପ୍ରୟୋଗ ଘଟୁଛି, ତାହା ପ୍ରତ୍ୟେକ ବିଦଗ୍ଧ କାବ୍ୟରସିକ ପକ୍ଷରେ ବାସ୍ତବିକ ପୀଡ଼ାଦାୟକ । ଚିଂତା ବା ଆବେଗର ସଂହତି, ଛନ୍ଦ ଓ ଅନୁପ୍ରାସର ଯଥାଯଥତା ଏବଂ କାବ୍ୟିକ ଅନିବାର୍ଯ୍ୟତାର ଅଭାବ, ରହିବା ଫଳରେ ଅନେକ ସମୟରେ 'ଢିଅଁ ଗଢ଼ୁ ଗଢ଼ୁ ମାଂକଡ଼' ବି ହୋଇ ଯାଉଛି । ସ: ସ୍ୱା: ]

ବଢ଼ିଲଣି ଆଳୁ ଦର, ମିଳୁ ନାଇ ଚିନି,
ଦୁର୍ଲଭ ଯେ ଗଂଗାଜଳୁ ହେଲା କିରାସିନି,
କବିତାର ଫାଂକେ ଫାଂକେ ଜମେ ସେଇ କଥା,
ଅଷ୍ଟମ ସନ୍ତାନ ସାର୍ଟେ ପଡ଼େ କେତେ ଲଥା,
ପଂଚମର ନଲୀପେଂଟେ ଗୁଲେ ନାଇ ଛୁଂଚ,
କବିତାରେ 'ଚେତନାର ବିଚ୍ଛେଦ' ହଟିଛି ।
ବିଚ୍ଛେଦ ବା ବ୍ୟବଚ୍ଛେଦ ଅବା ପୂର୍ଣ୍ଣଚ୍ଛେଦ
ଯାହାହେଉ, କବିତା ଯେ ହୋଇଛି ଜବ୍ଦ ।
ମାତ୍ର ତାର ରୂପଭେଦ ହେଉନି ତ ଚିହ୍ନି
ପାଣିମିଶା ଦୁଧ ଅବା ଦୁଧମିଶା ପାଣି

ନାହିଁ ଆଉ ଭୟ ଚିନ୍ତା, ନାହି ଭଲ, ମନ୍ଦ,
ଖାରଖାଂକ ବୀଣା-ତାରୁ ମଳୁଛି ଧ୍ରୁପଦ ।
ଶୁଭେ ଖାଲି ଖିଆଲର ଟେଢ଼ାମେଢ଼ା ଗତ,
ଯେଉଁପରି ଆଗପଛ ବାହ୍ମାଡ଼ା ବା ଦାନ୍ତ ।
ହସିଲେ କାନ୍ଦିବା ପରି, କାନ୍ଦିଲେ ତା ହସ,
ଭଂଜଠାରୁ ଗ୍ରଉତର ବଢ଼ିଛି ସର୍କସ !
(ପଥେ ଏଲିୟଟ, ସାର୍ଥେ, କମ୍ୟୁ ଓ ଲୁଇସ । )
କିଛି ଗ୍ରାମ୍ୟଗୀତ, କିଛି ସିନେମାର ରସ,
କୁମୁଦ କହ୍ଲାର ସାଥେ କିଛି କ୍ୟାକ୍‌ଟସ ।
ସବୁ ମିଶି କବିତା ଯେ ହୋଇଛି ପଲାନ୍ନ,
ଧୋତି ସଙ୍ଗେ ନେକ୍‌ଟାଇ, କଂଠରେ କୌପୀନ !!

କେଉଁଠି 'ମାଂକଡ଼ଚିତ୍ର ମାରେ ଯଦି ଜହ୍ନ'
ଅନ୍ୟଠାରେ 'ଖଗମାନେ ବନ୍ଦ ପହଲମାନ
ଟଣାଭିଣା କରଂତି' ଯେ ବଟ୍ଟର କବିଂକ,
ପୁଣି, ନାଚଂତି ଖେମଟା ।
କାହାର ପାଇଁ କେତେ କାଗା ହେଲବେଲେ ବଂଟା—
ପୂର୍ଣ୍ଣକଳସର ସ୍ଥାନ ମାଗେ କଣା ଲୋଟା ।
( ପ୍ରିୟା ସ୍ତନ ଉପମାକୁ ଲୁଟଇ ସପେଟା )
ଗଂଧ ମୃତ୍ତିକର ସ୍ଥାନ ସଦାଗ୍ରେ ରକ୍ଷିତ —
ପ୍ରେମିକାର ଗୁଳି ସଙ୍ଗେ ହେବାକୁ ତୁଳିତ ।
ଏବଂ ଯେତେ ଭଂଗାରୁଟା 'ବ୍ରାଂଡିର ବୋତଲ'
ଲୋଡ଼ଂତି ତୁଳନା ପାଇଁ 'ମାନସୀ କପାଳ ।'
'ସଜନା ଛୁଇଁ' ଯେ ଗୃହେଁ 'ଲଂଗ'ର ଆସ୍ଥାନ, *
ଚରଣାୟୁଧ ମାଗଇ ମୟୂର ଆସନ ।
ଚେତନାର ସମିଶ୍ରଣ ଘଟାଇବା ପାଇଁ
'ଗୋପୀଂକ ସ୍ତନର ଖୁଂଟେ' ବାଂଧେ କେ 'କହ୍ନାଇ'
ବଳଦ ପଶ୍ଚିକା, ଏବଂ ଗ୍ରଧା ରକ୍-ଏଂଡ୍-ରୋଲ

---

* ଉଦ୍ଧୃତ ଛନ୍ଦ ମଧ୍ୟରେ ରଖାଯାଇଥିବା ସମସ୍ତ ଉପମା ଓ ଶବ୍ଦ କୌଣସି ନା କୌଣସି ଆଧୁନିକ କବିତାରୁ ଅବିକଳ ଉଦ୍ଧାର କରାଯାଇଛି । କବି ଓ କବିତାର ନାମ ପ୍ରକାଶ ନ କରିବା ହିଁ ସମୀଚୀନ ବୋଧହେଲା । ଏଥିରୁ କୌଣସିଟି ଶବ୍ଦ ମୋର ନୁହେଁ । "ସଜନାଛୁଇଁ ପରି ଝୁଲୁଛି ମୋ ଲଂଗ" ଲାଇନ୍‌ଟି ମଧ୍ୟ ଏକ ସୁପରିଚିତ ଆଧୁନିକ କବିଂକ କବିତାରୁ ଉଦ୍ଧୃତ । ସ: ଗ୍ର:

ନାଚ ନାଚ ଥକଯାଂତି, ବେଦମ ହାଲ୍ଲା ।
କଟକର ଛକେ ଛକେ ଦୁର୍ଗାମେଢ଼ ପରି
ଭବାନୀ ବସଂତି ଯଥା କଲେଜ ସୁଂଦରୀ—
କେବେ ଶଲଓ୍ୱାର, କେବେ ଶାଢ଼ୀ ବା ଶ୍ୱେଟର ;
ଚଢ଼ଂତି ସେ ଏରୋପ୍ଲେନେ, ସିଂହଟା ବେକାର ।
(କିଏ ଜାଣେ କାଲ୍ ହେବେ ବେଶ କି ପ୍ରକାର,
ଚଢ଼ିବେ କି ଯାନ—ରିକ୍ସା ଅବା ସାଇକଲ ?
ନା ଜିପ୍ ମୋଟର ? )

ଭାରତୀ ବି ଘଡ଼ି ଘଡ଼ି ବଦଳାଂତି ବେଶ
ବହୁତ କିସମ ଅଂଗା, ଭଲି ଭଲି ଡ୍ରେସ୍ ।
ସ୍ୱର ବି ବଦଳିଯାଏ ବୀଣାରେ ତାଂକର
କେବେ ଭୈରବୀ, କେବେ ତୋଡ଼ୀ ବା ମଲ୍ଲାର
କେ କବି କହୁଛି ଝାଡ଼େ କବିତାର ନାମେ
ନାଂସ୍ୟରିବ-କଣା କଂଠେ ଯଥା କ୍ଲାସ୍‌ରୁମେ—
'ଶୁଣ, ଶୁଣ, କହୁଛି ମୁଁ ଯେ ପୋଖରୀ କଥା
ଲଂବ ତାର ଏତେ ପୁଣି ପ୍ରସ୍ଥ ଏତେ ବି ତା' !'
ଅନ୍ୟ କିଏ କଷେ ଅଂକ, କିଏ ଲେଖେ ଗ୍ରନ୍ଥ,
କେ ଦିଏ ବାରୁଦ ଫୁଂକି, ଗଂଧକ କେ ହାସ୍ତ !
କାହିଁ ପୁଣି 'ମେଂଢାପରେ ବସି ଏକ ମାଛି
ସଂଜବେଳେ' ସ୍ୱର୍ଗଦ୍ୱାର ଆଡ଼େ ଗଲିଅଛି ।
ଏହିପରି ଛନ୍ଦ ଆଉ ରୂପକର ହାର
ଉତ୍କଳ ଭାରତୀ ଗଳେ ଶୋଭେ ସୁପ୍ରଚୁର
ଜୀବନର ଖରଗତି, ଗଭୀର ଉତ୍ତାପ
( ବହୁଳ ବସ୍ତୁତି ତାର, ବହୁବର୍ଣ୍ଣ ରୂପ······)
ସମସ୍ତ ହରାଇ କାବ୍ୟ ହୁଏ ଏକ ଖୋପ
ସବୁ ବାଗ୍‌ବୃଳତା, ସବୁ ଧୈର୍ଯ୍ୟ ପ୍ରସ୍ଥ ପାଇଁ ।
କବିତାଟା ଯାକି ଖାଲି ଲଂବ ଲଂବ ଗୁଇ !!

ସବୁ ଖାଲି ଧୂଆଁ ବାଣ, ଏକ ବଡ଼ 'ନାହିଁ' ।
ମନେହୁଏ କାବ୍ୟଲୋକେ ଆସିଛି ମହାର୍ଘ
ନୂତନ ଅମଳ, ନାମ 'ନଲୀପେଂଟ ଯୁଗ' ।
ପଡ଼ିଗଲେ ମୁସ୍କିଲ୍ ବସିବାଟା ଉଠି,
ଉଠିବାକୁ ଗଲେ ଯାହା ଫାଲେ ଯାଏ ଫାଟି ।

ଆସିଛି ନୂତନ ଯୁଗ ଭେଜାଲର, ଢାଳା,
ଚୌଷଠି ପ୍ରକାର ଖେଳ, ପୁଣି ବାରମଜା ।
ଅଛୁ ପୁଣି ହିପ୍‌ପି ଖେଳ, ମାରଜୋନା ତଥ୍ୟ,
'ହରେକୃଷ୍ଣ' ନାମ ସଂଗେ 'ରାମନାମ ସତ୍ୟ'
ସେଇ ନବଯୁଗେ ଆଜ ଶୁଭ ବିଜୟାରେ
ପ୍ରଣମେ ମୁଁ ବାରଂବାର ସୂର୍ଯ୍ୟସ୍ନାନ ପରେ ॥

—ନଭେମ୍ବର, ୧୯୭୮



# ନୀଳ କେନ୍ଦ୍ର

ପୂର୍ବାଭାସ ଏ କବିତାଟି ବୌଦ୍ଧ ମାଧ୍ୟମିକବାଦ ଉପରେ ଆଧାରିତ । ମହାଯାନୀ ଧ୍ୟାନ ଓ ଚିଂତା ଏକାବେଳେକେ ବିଦାୟ ନ ନେଲେ ମଧ୍ୟ ନାନା ବିବର୍ତ୍ତନ ଓ ରୂପାଂତର ମଧ୍ୟ ଦେଇ କ୍ରମେ ବଜ୍ରଯାନ, ମଂତ୍ରଯାନ, କାଳଚକ୍ରଯାନ ଏବଂ ସହଜଯାନରେ ଆସି ପହଂଚେ । ବଜ୍ରଯାନୀଂକ ମତରେ ନିର୍ବାଣ ପରେ ତିନୋଟି ଅବସ୍ଥା; ଶୂନ୍ୟ, ବିଜ୍ଞାନ ଓ ମହାସୁଖ । ଶୂନ୍ୟ ତତ୍ତ୍ୱର ସୃଷ୍ଟିକର୍ତ୍ତା ନାଗାର୍ଜୁନ । ତାଂକ ମତରେ ଦୁଃଖ, କର୍ମ, କର୍ମଫଳ, ସଂସାର ସମସ୍ତହିଁ ଶୂନ୍ୟ, ଶୂନ୍ୟତାର ଏଇ ପରମ ଜ୍ଞାନହିଁ ନିର୍ବାଣ ।

ବଜ୍ରଯାନୀମାନେ ଏଇ ନିର୍ବିକଳ୍ପ ଜ୍ଞାନର ନାମକରଣ କଲେ ନିରାତ୍ମା; ଏବଂ କହିଲେ, ଜୀବର ଆତ୍ମା ନିର୍ବାଣ ଲାଭ କଲେ ଏଇ ନିରାତ୍ମାରେହିଁ ବିଲୀନ ହୁଏ । ନିରାତ୍ମା କଳ୍ପିତା ହେଲେ ଦେବୀ ରୂପେ, ଏବଂ କୁହାଗଲା ବୋଧିଚିତ୍ତ ଯେତେବେଳେ ନିରାତ୍ମାର ଆଲିଂଗନାବଦ୍ଧ ହୋଇ ନିରାତ୍ମାରେହିଁ ବିଲୀନ ହୁଅଂତି, ସେତିକବେଳେହିଁ ଉତ୍ପତ୍ତି ହୁଏ 'ମହାସୁହ'ର (ମହାସୁଖ) । ବୋଧିଚିତ୍ତର ଅର୍ଥ ହେଉଚି ଚିତ୍ତର ଏକ ବିଶେଷ ବୃତ୍ତି ବା ଅବସ୍ଥା ଯେଉଁଥିରେ ସମ୍ୟକ୍ ଜ୍ଞାନ ବା ବୋଧିଲାଭର ସଂକଳ୍ପ ବର୍ତ୍ତମାନ । ବଜ୍ରଯାନୀମାନେ

କହନ୍ତି, ମୈଥୁନଯୋଗରେ ଚିତ୍ତର ଯେଉଁ ପରମ ଆନନ୍ଦମୟ ଭାବ, ଯେଉଁ ଏକକେନ୍ଦ୍ରିକ ଧ୍ୟାନ ତାହାହିଁ ବୋଧିଚିତ୍ତ । ଏହି ବୋଧିଚିତ୍ତ ପୁରୁଷ ରୂପେ କଳ୍ପିତ ହେଲେ । ଏହି ବୋଧିଚିତ୍ତହିଁ ବଜ୍ର, କାରଣ କଠୋର ଯୋଗ ସାଧନା ଫଳରେ ଇନ୍ଦ୍ରିୟଶକ୍ତି ସଂପୂର୍ଣ୍ଣ ଦମିତ ହୋଇ ବଜ୍ର ପରି ଦୃଢ଼ ଓ କଠିନ ହୁଏ । ବୋଧିଚିତ୍ତର ବଜ୍ରଭାବ ଲାଭ ଘଟିଲେ ତେବେ ଯାଇ ବୋଧିଜ୍ଞାନ ଲାଭ ହୁଏ । ଚିତ୍ତର ଏହି ବଜ୍ର ଭାବକୁ ଆଶ୍ରୟ କରି ସାଧନାର ଯେଉଁ ମାର୍ଗ ତାହାହିଁ ବଜ୍ରଯାନ ।

ଇନ୍ଦ୍ରିୟ ଶକ୍ତିକୁ, କାମନା-ବାସନାକୁ ସଂପୂର୍ଣ୍ଣ ଦମିତ କରିବାହିଁ ବଜ୍ରଯାନର ଲକ୍ଷ୍ୟ । ମାତ୍ର ସେମାନେ କୃତ୍ରିମ ଉପାୟରେ କିଂବା କୃଚ୍ଛ୍ର ସାଧନା ଦ୍ୱାରା ଇନ୍ଦ୍ରିୟଗ୍ରାମକୁ ଦମିତ ନ କରି ବରଂ ତାହାର ସ୍ୱାଭାବିକ କ୍ଷୟ ଘଟାଇ ସେସବୁକୁ ବଶ ମନାଇବାରେ ବିଶ୍ୱାସ କରନ୍ତି । ବଜ୍ରଯାନୀମାନେ କହନ୍ତି, ଇନ୍ଦ୍ରିୟ ଦମନ କରିବାକୁ ହେଲେ ଆଗେ ସେଗୁଡିକୁ ଜାଗରିତ କରିବାକୁ ହୁଏ । ମିଥୁନ ସେହି ଜାଗରଣର ଉପାୟ । ମିଥୁନଜାତ ଆନନ୍ଦକୁ ଅର୍ଥାତ୍ ବୋଧିଚିତ୍ତକୁ ସ୍ଥାୟୀ କରାଯାଏ ମନ୍ତ୍ରଶକ୍ତିର ସାହାଯ୍ୟରେ ଏବଂ ସେହି ଅବସ୍ଥାରେହିଁ ଇନ୍ଦ୍ରିୟ-ଶକ୍ତି ଦମିତ ହୁଏ । ସାଧକର ମନ୍ତ୍ର ବା ଧ୍ୟାନ ରୂପମୂର୍ତ୍ତି ଲାଭ କରେ । ଏହି ରୂପମୂର୍ତ୍ତିମାନେହିଁ ବିଭିନ୍ନ ଦେବଦେବୀ । ବଜ୍ରଯାନୀର ଦେବାୟତନଟି ବେଶ୍ ଜନାକୀର୍ଣ୍ଣ ।

ସହଜଯାନୀ ଦେବଦେବୀ ବା ମନ୍ତ୍ର-ମୁଦ୍ରା-ପୂଜା-ଆଚାରକୁ ସ୍ୱୀକୃତ ଦିଏ ନାହିଁ । ସହଜଯାନୀ ମତରେ, ବାହ୍ୟାନୁଷ୍ଠାନରେ କୌଣସି

ମୂଲ୍ୟହିଁ ନାଇ । ସହଜଯାନୀମାନଂକ କଥାରେ କହିବାକୁ ଗଲେ ଶୂନ୍ୟତା ହେଲେ ପ୍ରକୃତି, କରୁଣା ହେଲେ ପୁରୁଷ । ଏଇ ପୁରୁଷ-ପ୍ରକୃତି ବା ନାରୀ-ପୁରୁଷ ମିଥୁନ-ମିଳନ ଯୋଗରେ ଯେଉଁ ପରମାନଂଦମୟ ଅବସ୍ଥା ସୃଷ୍ଟି ହୁଏ ତାହାହିଁ ମହାସୁଖ । ଏହି ମହାସୁଖହିଁ ଧ୍ରୁବ-ସତ୍ୟ । ଏଇ ଧ୍ରୁବସତ୍ୟର ଉପଲବ୍ଧି ଘଟିଲେ, ଇଂଦ୍ରିୟଗ୍ରାମ ବିଲୁପ୍ତ ହୋଇଯାଏ, ସଂସାରଜ୍ଞାନ ତିରୋହିତ ହୁଏ, ଆତ୍ମପରଜ୍ଞାନ ବି ନଷ୍ଟ ହୁଏ, ଧଂସ୍କାର ଲୋପ ପାଇଯାଏ । ଏହାହିଁ ସହଜ ଅବସ୍ଥା । ବୌଦ୍ଧ ଚର୍ଯା ଗୀତିର୍ ଦୋହାଁଗୁଡ଼ିକରେ ସହଜଯାନର ପ୍ରଭାବ ପରିଦୃଷ୍ଟ ହୁଏ ।

କାଳଚକ୍ରଯାନ ବଜ୍ରଯାନର ଆଉ ଏକ ସ୍ତର । ଏମାନଂକ କାଳଚକ୍ର ବା ଅନଂତ ସମୟହିଁ ସର୍ବଦର୍ଶୀ, ସର୍ବଜ୍ଞ । ଏଇ କାଳଚକ୍ରହିଁ ଆଦି ବୁଦ୍ଧ ଏବଂ ସକଳ ବୁଦ୍ଧଂକର ଜନ୍ମଦାତା । କାଳଚକ୍ର ପ୍ରଜ୍ଞା ସହ ମିଳିତ ହୋଇ ଜନ୍ମଦାନ କାର୍ଯଟି ସଂପନ୍ନ କରଂତି । (ଡଃ ନିହାରରଂଜନ ରାୟ, "ବାଂଗାଲୀର ଇତିହାସ")

ବଜ୍ରଯାନ, ସହଜ ଯାନ ଓ କାଳଚକ୍ର-ଯାନ ପ୍ରଭୃତିର ମୂଳ ଯୋଗାଚାର ଓ ମାଧ୍ୟମିକ ଦର୍ଶନରେ ନିହିତ । ଏଇ ତିନି ଯାନହିଁ ଗୁହ୍ୟସାଧନା ବା ଯୋଗାଚାର ଉପରେ ନିର୍ଭର କରଂତି । କାୟାସାଧନାହିଁ ଏଇ ତିନି ଯାନର ଅପରିହାର୍ଯ ପରିଣାମ ହୋଇ ଶେଷକୁ ରହି ଯାଏ ।

ବଜ୍ର ଯାନୀ ସାଧନାରେ ଡୋମ୍ବୀ, ନଟୀ, ରଜକୀ, ଚଂଡାଳୀ ଓ ବ୍ରାହ୍ମଣୀ ପ୍ରଭୃତି ଏଇ ପାଂଚଟି କୁଳରୁ ସାଧକକୁ ତାର 'ସ୍କଂଧ'

ଅନୁଯାୟୀ ସାଧନା-ସଂଗିନୀ ବା ଭୈରବୀ ବାଚ୍ଛିବାକୁ ପଡ଼େ । ଏଇ ପ୍ରଥା 'କୁଳନିର୍ଣ୍ଣୟ' ନାମରେ ଅଭିହିତ । ବ୍ରାହ୍ମଣ୍ୟ ଓ ଶକ୍ତି-ଧର୍ମରେ ମଧ୍ୟ ଅନୁରୂପ ବିବର୍ତ୍ତନ ଘଟିଥିଲା ଏବଂ କ୍ରମେ ତଂତ୍ର ବା କାୟାସାଧନ ବା ଦେହାଶ୍ରୟୀ ହଠଯୋଗ ହିଂଦୁଧର୍ମକୁ ମଧ୍ୟ ଗ୍ରାସ କରିଥିଲା । ସମଗ୍ର ଭାରତବର୍ଷ ଧର୍ମମତ ନିର୍ବିଶେଷରେ ପ୍ରାୟ ଏକହଜାର ବର୍ଷରୁ ଅଧିକ କାଳ ତଂତ୍ର ବା କାୟାସାଧନା ପ୍ରଭାବରେ ଆଚ୍ଛନ୍ନ ହୋଇ ରହିଥିଲା··· ।

ସହଜୟା ସିଦ୍ଧମାନେ ଶୂନ୍ୟପକ୍ଷ ଅବଲଂବନ କରି ସମସ୍ତ କିଛି ଅନିତ୍ୟ, ଅନାତ୍ମ, କେବଳ ନିର୍ବାଣ ସତ୍ୟ ବୋଲି ବୁଦ୍ଧବାଣୀ ମାନି ନେଲେ । ମହାସୁଖ ନିର୍ବାଣର ପ୍ରତୀକ । ଶୂନ୍ୟର ପ୍ରତିଶବ୍ଦ ରୂପେ ବଜ୍ର ଗୃହୀତ ହୋଇ ବଜ୍ରଯାନ ସିଦ୍ଧାଂତର ପ୍ରତିଷ୍ଠା ହେଲା । ଶୂନ୍ୟହେଲେ ବଜ୍ରସତ୍ତ୍ୱ ବା ବୋଧିଚିତ୍ତ । ବଜ୍ର ସହ ପଦ୍ମର ଏବଂ ଶୂନ୍ୟ ସହ କରୁଣାର ମିଳନ-ମୈଥୁନ ଆରୋପ କରି ବଜ୍ରସତ୍ତ୍ୱର ଯୁଗନଦ୍ଧ ରୂପ ପରିକଳ୍ପିତ ହେଲା । ବଜ୍ରଯାନର ଶୂନ୍ୟ, କରୁଣା ଓ ବଜ୍ରସତ୍ତ୍ୱ ସହଜଯାନୀ ଦୃଷ୍ଟିରେ ଯଥାକ୍ରମେ ପ୍ରଜ୍ଞା, ଉପାୟ ଓ ବୋଧିଚିତ୍ତ । ଏଇ ବୋଧିଚିତ୍ତ ବା ବଜ୍ରସତ୍ତ୍ୱ ମୂର୍ତ୍ତିମଂତ ଶୂନ୍ୟ ଏବଂ ମହାସୁଖର ସଂପାଦକ । ସାଧାରଣତଃ ଜୀବନଚର୍ଯ୍ୟା ମଧ୍ୟରେ ପ୍ରବୃତ୍ତି ମାର୍ଗରେ ଗତି କରି ସାଧକ ଏହା ଲାଭକରେ । ଡୋମ୍ବୀ, ରଜକୀ, ଶବରୀ ପ୍ରଭୃତି ସାଧନା-ସଂଗିନୀମାନେ ନୈରାତ୍ମାର ପ୍ରତୀକ । ସେମାନଂକ ସଂଗେ ମୈଥୁନ-ସାଧନା ବା ପ୍ରଜ୍ଞୋପାୟ ଯୁଗନଦ୍ଧ ସାଧନା ଦ୍ୱାରା ସାଧକ ମହାସୁଖ ଲାଭକରେ । ଏହି ମହାସୁଖ ବୌଦ୍ଧର ନିର୍ବାଣ, ହିଂଦୁର ମୋକ୍ଷ ଓ ତାଂତ୍ରିକ ସାଧନାର ସମରସ ପର୍ଯ୍ୟାୟବାଚୀ ।

ଏ ତୁମର ପୂର୍ଣ୍ଣାଂଜଳି—
ମୋ ସତ୍ତାର ଯଜ୍ଞର ଅନଳେ,
ଜଳେ ଯାହା ହୁତୁ ହୁତୁ ହୋଇ ଧନୁ ଧନ
ସ୍ୱର୍ଗୀ-ସୌରଭରେ ।
ଦେଇଛ ତ ସବୁ ତୁମେ ଢାଳି
ସ୍ନେହ, ପ୍ରେମ ଓ କାରୁଣ୍ୟ,
ଏବଂ ସର୍ବଶେଷ ଭୟର ଶିକୁଳି ।
ଶେଷେ ତୁମେ କାଢ଼ିନେଲ ମୃଣାଳୀ ହାତର
ସେଇ ନୀଳ ପାଖୁଡ଼ା ପାପୁଲି
ଢାଂକିଥିଲି ଯାହା ତୁମ ଲଜ୍ଜା ।
ଏ କି ତୁମ ଲଜାଂଜଳି ?
ପୂର୍ଣ୍ଣାହୂତି ? ସମସ୍ତ ଓ ନିଜକୁ ପାସୋରି ?
(ଯାହା ମୋତେ ଭୁଲାଇଲା ପଶାଖେଳ
ପତ୍ନୀର ସହିତ, ଏବଂ କଲି ନମିତ୍ତେ ଶବାର
ଏକ ଅଦ୍‌ଭୁତ ପକ୍ଷୀର ।)
ଏ କି ତେବେ ସେଇ ମଧୁଶଯ୍ୟା
ମୋ ସତ୍ତାର ନିଭୃତ କକ୍ଷରେ !
ଯେଉଁଠାରେ ତୁମେ ସ୍ୱାହା, ଅନିର୍ବାଣ ମହାଜ୍ୱଳନରେ । ୧
ତୁମେ ପୁଣି ଯହିଁ ମହାଶ୍ୱେତା
ଚିର ବିରହିଣୀ ।
ଦିଗଂବରୀ, ପୁଣି ଆଚ୍ଛାଦିତା
ମୋର ମହାନଗ୍ନତାର ଜାଲେ ।
ତୁମେ କି ସେ ସହଜସୁଂଦରୀ ୨

---

* ଲଜାଂଜଳି = ବିବାହ ବେଦୀରେ ଘୃତହୋମ ପରେ କନ୍ୟା ଲଜାଂଜଳି ଦେବାର ବିଧି ଅଛି । ଏହାକୁ ଲଜାହୋମ କୁହାଯାଏ ।

୧ ।। ସ୍ୱାହା = ଅଗ୍ନିପତ୍ନୀ

୨ ।। ସହଜସୁଂଦରୀ = ସାରଳା ଦାସଂକର ଏକ ମାନସକନ୍ୟା ।

ନୃତ୍ୟ ଆଉ ଲୀଳା,
ନୃତ ଯିଏ ଆସେ ଅବତରି
ପ୍ରଜ୍ଞାର ଚୂଡ଼ାରୁ
ହୃଦୟର ନୀଳ ଉପକୂଳେ ।
ଜୀବନର ସହସ୍ର ଅଂଗନେ
ସଂଗୀତେ ଓ କାବ୍ୟେ,
ଛନ୍ଦେ, ଅଭିନୟେ ଏବଂ ନୃତ୍ୟେ
(ଯେଉଁଠାରେ ନୃତ୍ୟ ଓ ନର୍ତ୍ତକ
ଅଭିନ୍ନ ଓ ଏକ । )
ଶବ୍ଦକୁ ନିଃଶବ୍ଦ କରି,
ନିଃଶବ୍ଦକୁ ଶବ୍ଦରେ ମଂତ୍ରୁରି ।
ତୁମେ କି ସେ ରତ୍ନଦୀପ
ମଣିକାଞ୍ଚନର
ଝଲମଲ ଦୁଇସ୍ତଂଭେ ଯାହା ନିତ ଜଳେ ।
ଯାହା ପାଇଁ ରହେ ମୁହିଁ ଗୁହିଁ,
ଜଳିବାକୁ ପଳେ ପଳେ ଯେଉଁଥିରେ ମୁଁ ସଳିତା ହୋଇ ।
ନିଜେ ଜଳି ଜାଳିବାକୁ ତାରେ
ଗୋଟିଏ ଜ୍ୱଳନେ ।
ବଜ୍ରଠାରୁ ଦୃଢ଼ତର କଠିନ ସଂଗମେ,
ଉଦାସୀନ, ନିଷ୍ଠୁର ରତରେ ।
ବୃଷ୍ଟିହୀନ ମେଘ ପରି ନକ୍ଷତ୍ରମଣ୍ଡଳୀନ
କେଉଁ ଏକ ରୁଦ୍ଧ ସଂଘର୍ଷଣାରେ ।
ଯେଉଁଠି ମୁଁ ପାରି ହୁଏ ମୋତେ
ସେତୁ ପରି,
ଏବଂ ତାକୁ ହେଲେ ଅତକ୍ରମେ ।
ଏବଂ ଶେଷେ ହୁଏ ଏକାକାର
ତା ଭିତରେ, ଯେଉଁପରି ଅଗ୍ନି ଓ ଅଂଗାର ।
ଏବଂ ତାକୁ ନେଇ ଗୃଲେ ମୋ' ସାଥିରେ
ନବ ନବ ସିଦ୍ଧିର ତୋରଣେ ।
ଶ୍ୱେତ ଆଉ ନୀଳେ
ସାଧନାର ସହସ୍ର ଗ୍ରଂଥିରେ ॥

ନେଇଗୃଲେ ମହାସୁହେ ।
ସେଇ ଶୀର୍ଷ ବିନ୍ଦୁର କେନ୍ଦ୍ରରେ ।

ଯେଉଁଠି ମୁଁ ବୋଧିଚତ୍ତ
ସେ ନୈରାତ୍ମା,
(ମୋ' ବକଳ୍ପ ସତ୍ତା ।)
ଏବଂ ଶୂନ୍ୟତା ଖୋଜେ କେବଳ କରୁଣା ।
କାଳଚକ୍ର ପ୍ରଜ୍ଞା ପାରମିତା ॥

ନୀଳକଣ୍ଠ ପରି ତାର ସ୍ତନ
ନକ୍ଷତ୍ର ଧୂଳିରେ ହୁଏ ସ୍ଥୂଳ ।
ସମୁଦ୍ର-ଆଲୋକ ପରି ତାର ଯୋନି
ଭୋଗ କରେ ନବଜ୍ୱ ଶୃଂଗାର
ମୁଁ ତାର ଦୁଇ ଓଠ ପ୍ରାଂତେ
ଆଂକିଦିଏ ଦ୍ୱିତୀୟା ଜହ୍ନର
କୋମଳ ଫଳକ ।
ଏବଂ ଆଣେ କଦଂବର ପଦ୍ମଳ ରୋମାଂଚ
ତା' ଦେହରେ, ପ୍ରତି ଅର୍ଦ୍ଧବୃତ୍ତେ ।
ନାଭିତଳ କୋମଳ ଉତ୍ସଙ୍ଗେ
ଫୁଟେ ନବ ରୋମାବଳୀ ସ୍ୱର୍ଣ୍ଣ-ଶ୍ୟାମଳିମା,
ମନେହୁଏ, ଚଂଦ୍ରହାରୁ ପଡ଼ ନୀଳମଣିର ଆଲୋକ
କରିଅଛି ସେଠାରେ ବା ନଜକୁ ଚର୍ଚ୍ଚମା । *
ତା ଶାଢ଼ୀର ନୀଳପ୍ରସ୍ଥେ ସ୍ତନବଂଧୁ ଷଣେ ଉଠେ ଜଳି ।
ମନେହୁଏ ଯେପରି ବା ସମୁଦ୍ର ଭିତରେ
ଲୁଚିଥିବା ମୈନାକର ସେ ମୁକୁଟ-ମୌଳି ।
କିଂତୁ ମୁହିଁ ରହେ ଉଦାସୀନ,
ଅନାସକ୍ତ ନୀଳାକାଶ ପରି ।
ମୁଁ ଏକ ବଜ୍ରଯାନୀ, ଭୈରବ, ସାଧକ !
ମୁଁ ଯେ ମାଧ୍ୟମିକ
ନଷ୍ଠୁର ବୈରାଗୀ । ଏକ କାପାଳିକ ॥

କିଂତୁ ସେ ତ ନୁହେ ଶବ ।
ସେ ଯେ ମୋର ଲୀଳାର ସଙ୍ଗିନୀ,
ନିତ୍ୟ ଅଭିନବ ।
ନୁହେ ସେତ ଡୋଂବୀ, ନଟୀ ଅବା ରଜକନୀ ।
ନୁହେ ସେ ଭୈରବୀ-ଯଂତ୍ର,

* କୁମାରସଂଭବରେ କାଳିଦାସଂକ ବର୍ଣ୍ଣନା ସଙ୍ଗେ ତୁଳନୀୟ ।

ଅବା ଗୁହ୍ୟ ସାଧନାର ଏକ ମଂତ୍ର-ଧ୍ୱନି,
(ନୀରବ ଯୋଗିନୀ ।)
କଂପେ ତାର ବୁକୁରେ ନିଃଶ୍ୱାସ ।
ବାଜିଉଠେ ତା' ହାତରେ ଚୂଡ଼ି ରିଣିଝିଣି
ମୋ ବୁକୁ ସ୍ପଂଦନ ସହ ରଚି ଅନୁପ୍ରାସ ।
ତାର ଅନାବୃତ ଦେହ ଗୃହେଁ ପିଂଧି ଏକ ନୀଳ ଶାଢ଼ୀ
ଏବଂ ଦେଇ ରଂଗୀନ୍ ଓଢ଼ଣି,
ଉଠିବାକୁ ବାଜି ଫୁଲସଂଜେ ।
ପଦ ଗୃହେଁ ନୂପୁର ନିକ୍ୱଣେ
ଛୁଟିବାକୁ ଦୂରତମ ଅଦୃଷ୍ଟର କୁଂଜେ,
ନବ ଅଭିସାରେ ।
ଭେଟିବାକୁ ଗୋଟିଏ ମୁହୂର୍ତ୍ତ ।
ଏବଂ ଦୁଇ ହାତ
ଟାଣି ଆଣି ବେଗେ ଜ୍ୟାମୁକ୍ତ
ଧନୁଶର କରିବାକୁ ଗୃହେଁ ପୁଣି ଶିକାର ହରିଣ ।
(ଯେ ହରିଣ ନିଜରଇ ମୃତ୍ୟୁ, ସିଏ ନିଜ ମୃତ୍ୟୁର କାରଣ ।) ✳
ସିଏ ଏକ ପାହାଡ଼ର ନଈ
ଝରଝର କଲନାଦେ ଅବିରତ ଯାଏ ସିଏ ବହି ।
ନୁହେ ଉପଧାର ଯାହା ମୃତା ତଟିନୀର ।
ସେ ଏକ ସିଂଫୋନୀ
କେଉଁ ସେ ଭୋରର । ଅବା କେଉଁ ମେଘୁଆ ଦିନର
ପ୍ରଥମ ସାନାଇ ।
ଭାଂଗି ତାର ଶିଳାର ତପସ୍ୟା
ସେ ଗୃହେଁ ଯେ ହେବାପାଇଁ ଏକ ଚତୁର୍ମାସ୍ୟା,
ନୂଆ ବର୍ଷଣର ।
ମୋ ବଜ୍ର-ସାଧନା ଭଳେ, ପଡ଼େ ମୁହିଁ ଭାଂଗି ମୁହୂର୍ତ୍ତରେ,
ଜୀର୍ଣ୍ଣ ପ୍ରାସାଦଟି ପରି ଗଡ଼ିଖାଇ ଜଳେ,
ଶୀର୍ଣ୍ଣ ଶିଉଳିରେ ।
ବାନ୍ଧି କରି ତାକୁ ଆଲିଂଗନେ ।
ଉଦାସୀନ ନିଷ୍ଠୁର ମୈଥୁନେ ॥

---

✳ ଏଠାରେ ହରିଣ ବୌଦ୍ଧ ଚର୍ଯ୍ୟାପଦର 'ହରିଣା'କୁ ଲକ୍ଷ୍ୟ କରି ବ୍ୟବହୃତ ।

ସେ ନୁହେ ମୋ ଶେଷ ଦ୍ୱୈପାୟନ ।
ନିଷ୍କ୍ରମଣ ପଥହୀନ ଭଗ୍ନାର୍ତ୍ତ ସାମ୍ରାଜ୍ୟରେ,
କରିବାକୁ ନିଜକୁ ଗୋପନ ।
ନୁହେ ସେ ମୋ ଅବଶ୍ୟବ୍ୟର୍ଥତା ଯୁଦ୍ଧ ବା ଶାନ୍ତିରେ,
କେଉଁ ଅନ୍ତର୍ରାଜ୍ୟ ଅବା ରାଷ୍ଟ୍ର ବିପ୍ଳବରେ ।
ନୁହେଁ ସେ ତ ନେପଥ୍ୟର ପରିଖା
ନିର୍ଜନ ଦ୍ୱୀପରେ,
ଅବା ଶେଷ ଯବନିକା
ଅସମାପ୍ତ କେଉଁ ନାଟକର ।
କିମ୍ବା ସବୁ ସ୍ୱବିରୋଧୀ ମୋର
ନୁହେ ସେ ତ ଏକ ପଳାୟନ ।
ସିଏ ମୋର ନିଜରଇ ଆକୁଳ ସନ୍ଧାନ ।
ପୂର୍ଣ୍ଣରୂପେ ପାଇବାକୁ ନିଜେ ଅନ୍ୟର ଭିତରେ ।
ପୂର୍ଣ୍ଣରୂପେ ଦେଖିବା ନିଜକୁ ବିକଳ୍ପ ଦର୍ପଣେ ।
ପୂର୍ଣ୍ଣରୂପେ ଖୋଜିବା ନିଜକୁ ଆଉ ଏକ ସତ୍ତାର ପ୍ରାଙ୍ଗଣେ ।
ଏବଂ ଶେଷେ ସମସ୍ତ ହରାଇଦେବା
ଅସତ୍ତାର ସମୁଦ୍ର-ସନ୍ଧ୍ୟାରେ ॥

ବୁଲିଇ ତା ସୀମନ୍ତେ ମୋ ତୂଳି
ମୁଁ ଆଙ୍କେ ନିସ୍ୱର ଟୀକା ନୂତନ ମୂଲ୍ୟର ।
ମୁଁ ଲେଖେ ନିର୍ବାନପଦେ ଗୋଲାଇ ଗୋଧୂଳି
ନିସ୍ୱ-ଗାଥା ମୁକ୍ତ ସମ୍ପର୍କର ।
ଯାହା ନିତ୍ୟ ସଚେତନ; ନୂତନ, ସୁନ୍ଦର
ମୁକ୍ତ ଯଥା ଭୋ'ରର ଶିଶିର ।
ମନେହୁଏ ଯେ ଯେପରି ମୋର ଚିରଦିନ
ମୁକ୍ତିର ବୈଶାଳୀ । ※
ଏବଂ ମୋର ଅଦୃଷ୍ଟର ଭୂମି ।
ଅମର ସମ୍ପର୍କମୁକ୍ତ ଯେପରି ଆକାଶ,
ଯେପରି ପ୍ରଭାତ-ପକ୍ଷୀ, ସତେଜ, ସ୍ୱାଧୀନ ।
ଅଭାବରେ ଯା 'ଭାବେ ସପ୍ତମୀ' ॥

ସେ ଯେ ମୋର ନୀଳା ସହୃଦୟ
ଗୋଟିଏ ମୂର୍ଦ୍ଧନ୍ୟ-ସ୍ୱର,

---

※ ବୈଶାଳୀ = ବୌଦ୍ଧ ଯୁଗର ଏକ ଗଣରାଜ୍ୟ

ଯା ଚରଣକୁ ମାଗି
ଆଶାର ପ୍ରତିମା ॥

ଆସେ ସେ ତ, ଜୀବନର ଗୁପ୍ତ-ଦ୍ୱାର ଦେଇ
ନିଷିଦ୍ଧ ପ୍ରହରେ ଡେଇଁ ପ୍ରତ୍ୟହର ସୀମା ।
ମୋ କବିତା ପରି ।
କଳାର ମୂର୍ଚ୍ଛନା ପରି ନିଃଶବ୍ଦେ ସଂଚରି ।
ସବୁ ସାମ୍ନା ଦରଜା ଏଡ଼ାଇ ।
(ଯେ ଦରଜା ରହେ ଖୋଲା ଅନ୍ୟଂକର ପାଇଁ ।
ସଂସ୍କାର ପ୍ରବେଶପତ୍ର ଧରି ଯିଏ ପଶଂତି ଧସାଇ ।
ଯିଏ ସବୁ ଖୋଲି ଚଟି ପରି
ସକାଳ ଡାକରେ ଆସି
ସଂପୂର୍ଣ୍ଣ ଦଖଲ କରି ବସଂତି ଟେବୁଲ ।)
ସିଏ କିଂତୁ ଥାଉ ରହି ମୁହୂର୍ତ୍ତ ଗୋଟିଏ ।
ଥାଉ ହୋଇ ଗୋଟିଏ ମୋ' ପ୍ରିୟତମ ଭୁଲ ।
ମୋର ସବୁ ପାଇବାର ଯା ପ୍ରତୀକଟିଏ ।
ମୋର ସବୁ ଦେବା ହୋଇ ରହିଥାଉ ସିଏ
ସମସ୍ତ ପାଇବା ମଧ୍ୟେ, କାଳ-ଚକ୍ରବାଳେ ।
ଥାଉ ହୋଇ ଗୋଟିଏ ମୋ ନିର୍ବୋଳା ନକ୍ଷତ୍ର ।
ଏକ ଧ୍ରୁବ-ଚିହ୍ନ ।
ସୃଷ୍ଟିର ନିଃସଂଗ ମାର୍ଗେ କାବ୍ୟର ମୁହୂର୍ତ୍ତ ।
ଶିଳା ପରି ଉନ୍ନତ, ମହାନ,
ବସୁଧା-ବଚନ ॥

—ମାର୍ଚ୍ଚ, ୧୯୭୯



# ଦ୍ରଷ୍ଟା

ଗ୍ୟାଲେରୀରେ ଭିଡ଼ ନାଇ, ମୁଁ ଆଉ ମୋର ନାଟକ
ବସିଅଛୁ ମୁହାଁମୁହିଁ, ମୁଁ ଦେଖୁଛି ନୀରବ ଦର୍ଶକ
ମୋତେଇ କରେଖି । ମଞ୍ଚିରେ ତ ଆମ ଅଭିନୟ ।
ବହୁ ପାତ୍ର ପାତ୍ରୀ, କୁଶୀଲବ, କରନ୍ତି ବାଙ୍ମୟ
ମୋତେ ସିଏ, ମୋ ନାଟକେ ଦିଅନ୍ତି ଯା ରୂପ ।
ଏବଂ ବହୁ ଦୃଶ୍ୟପଟ ରାଜପଥ, ଉଦ୍ୟାନ, ମଣ୍ଡପ,
ରଣକ୍ଷେତ୍ର, ରକ୍ତାରକ୍ତି, ବହୁ କଟା ମଣିଷର ଦେହ
ଏବଂ ଶେଷେ ପ୍ରମୋଦ ଭବନ ଯେଉଁଠାରେ ନର୍ତ୍ତକୀର
ନୃତ୍ୟ ଏକାକାର । ନାୟକ ଓ ତାର ସମୟ
ଦୁହେଁ ଏକ । ପୁଣି କିଛିକ୍ଷଣ ପରେ ହୁଅନ୍ତି ଉଭୟ ।
ମୋ ନାଟକ ମୁଁଇ ଏକ, ପୁଣି ଆମେ ବିଚ୍ଛିନ୍ନ, ପୃଥକ ।
ମୁଁ ସେଠି ପ୍ରତୀକ୍ଷା କରେ ଘଟନାକୁ ଯାହା ଏକ
ସମୟରେ ଘଟିପାରେ କିଂବା ଯାହା କେବେ ଘଟିଥାନ୍ତା,
ମୁଁ ଏଠି ସ୍ରଷ୍ଟା, ପୁଣି ଅସହାୟ ନମିତ୍ତ ଓ ଦ୍ରଷ୍ଟା ।
କର୍ମେ ମୋର ଅଧିକାର, କର୍ମ ପୁଣି ଭିନ୍ନ ଏକ ସତ୍ତା ।
ଗ୍ୟାଲେରୀରେ ଭିଡ଼ ନାଇ, ମୁଁ ଆଉ ମୋର ନାଟକ
ବସିଅଛୁଁ ମୁହାମୁହିଁ, ମୁଁ ଦ୍ରଷ୍ଟା, ମୁଁ ପୁଣି ନାୟକ ॥

—ଜାନୁୟାରୀ, ୧୯୬୦



# 'ପ୍ରଥମ କଦଂବଫୁଲ'

ସେଦିନ ସେ କାଂଦିଥିଲା ପ୍ରଥମ କଦଂବଫୁଲ ଦେଖି
ସକାଳୁଆ, ଆଶ୍ୱିନର ବନ୍ଧୁତା ଜଡ଼ତାରେ ।
ଶ୍ୟାମଳ ତମାଳ ପରି କମ୍ପିଥିଲା ସେ ତାର ମରଜି,
ତାର ନୀଳ ଶୈଶବରେ ବାରଂବାର ଚମକି ଚମକି ।
ଏବଂ ସିଏ ଖୋଲି ନିଜ ଛିନ୍ନ ଭିନ୍ନ ପୁରୁଣା ଡାଏରି
ପଢ଼ିଥିଲା ଆବେଗରେ, ବାଛି କେତେ ଜୀର୍ଣ୍ଣ ପୃଷ୍ଠା ଖୋଲି—
'ଆଜି ଟ୍ରାମରେ ଭିଡ଼ ନାହିଁ । ଅସଂଭବ ସବୁଠି ଶୂନ୍ୟତା,
ପ୍ରତୁଲ ଘରକୁ ଗଲି । ଦେଖି ମୋତେ ଉପରୁ ଶ୍ରୀଲତା
ଟିକେ ଆଗ ହସିଦେଇ ହୋଇଗଲା ଭୀଷଣ ଗଂଭୀର ।
ଆସିଲାନି ଖୋଲିବାକୁ ଦରଜା ସେ ; ତାଂକର ଚାକର
ଖୋଲିଦେଲା କବାଟ ଓ ଚା' ମଧ୍ୟ ଦେଇଗଲା ସେଇ ।
ଓଃ ! କାଲି ହୋଇଥିଲା ଝଗଡ଼ା ଯେ ବଡ଼ୁଆଂକ ଛବିଟାକୁ ନେଇ !'
ନାହାଂତି ବଡ଼ୁଆ, ଗ୍ରେଟା ଗାର୍ବୋ, ଯମୁନା, ପାହାଡ଼ୀ,
ଉମାଶଶୀ, ପଂକଜ ମଲ୍ଲିକ, ଦେବଦାସ । ଏବଂ ସେଇ ଲଗ୍‌ମ୍ୟାଚ୍ ଧାଡି
ତାହା ପରେ କାହିଁଗଲା ଯୋଜନା ଓ ମୁନାଫାର ରଂଗୀନ୍ ସକାଳ,
ତାଳଦୀଘି, ବଂଶତଳା, ଶ୍ୟାମ ସିକ୍ତ 'ପଥେର ପାଂଚାଲି ।'
(ଏବଂ ନଗରର କରୁଣ ବସ୍ତିର )
ସୁଚିତ୍ରା ଉତ୍ତମ ଯୋଡ଼ି, ମୁଦ୍ରାସ୍ଫୀତି, ଡଲାରର ସିଡ଼ି
ଚୌ'ରର ଅପେରା ପରି ସବୁ ଶୂନ୍ୟ, ଅଛି ଖାଲି ପଡ଼ି
ଏକ ଚଳପଟ ।
ନେଫା ଓ ଲଦାଖ, ବମଡଲା, ପାକିସ୍ଥାନୀ ନାଟ।
ଭସ୍ମ ଓ ଲଙ୍କାର ଦିନ, ଭଗ୍ନ ସେତୁ, ବହୁ ଭଂଗା ଘଟ ।
ସୁଦୂର ଲଂଡନ ସେତୁ ଭାଙ୍ଗିଯାଏ, ହାଓଡ଼ା ବ୍ରିଜଟା ଥରହର,
ଏବେ ଅଛି ଖାଲି ସ୍ରୋତ, ଅଗ୍ନିସ୍ରୋତ ମଣିଷ ଓ ସୀସାର ତରଳ ।
ଏଠି ଯେ ବୋମାର ଗ୍ୟାସେ ଶ୍ୱାସରୁଦ୍ଧ ସକାଳର ଟ୍ରାମ ।
ଫୁଟି ଝରେ କୃଷ୍ଣଚୂଡ଼ା, ଝଡେ ଲାଲ ଲାଲ ଆଉଟ୍ରାମ । ✳

✳ ଆଉଟ୍ରାମଘାଟ (କଲିକତାର)

ଗଂଧକ ଧୂଆଁରେ ମ୍ଳାନ ସ୍ଥୂଳ ବସ୍, ମଧ୍ୟେ ସ୍ୟୁନଫର୍ମ
ଶ୍ୱେତ ଶୁଭ୍ର ପିଲାଂକର, ଗୃହଆଡ଼ ଭୟରେ ବିବର୍ଣ୍ଣ ।
ଆଉ ସେଇ ଘଡ଼ିବାଲା ଘରଟାର ସୁଗୋଲ ଗଂବୁଜ
ଚୌରଂଘୀର ବୁକୁପରେ, ଜଗିଛଂତି ଯାହାକୁ ଫଉଜ
ଯାହା ଥିଲା, ଯାହା ଅଛି । ତଳେ ଯାର ମାର୍କିନ ଦପ୍ତର ।
ମନେହୁଏ ସହରଟା ଏକ ବୋମା, କେତେବେଳେ ହେବ ବିସ୍ଫୋରଣ
କେହି ବି ଜାଣେନା, ତଥାପି ଜୀବନ ଚଳେ ଦ୍ରୁତ ଓ ମଂଥର
କର୍କଟ ରୋଗୀର ନାଡ଼ୀ ପରି, ସବୁ କିଛି ପ୍ରକ୍ଷିପ୍ତ ବିମୌନ—
ଫୁଟ୍‌ପାଥେ ବହୁ କ୍ଷୁଧା, ମଇଦାନେ ଭୀଷଣ ଶୂନ୍ୟତା,
ପ୍ରତି ଗଳି, ସହର ବସ୍ତିରେ ଡାଂକିଅଛି ଭୀଷଣ ନଗ୍ନତା ।
ଅଫିସ ଓ ପ୍ରେକ୍ଷାଘର, ପଥ ଘାଟ ବଜାର ଦୋକାନ,
ସମସ୍ତ ସ୍ପଂଦନହୀନ, ଥମ ଥମ୍ । ଅବା ଏକ ମହାଜାଗରଣ
ପୂର୍ବର ଏ ଯୋଗନିଦ୍ରା, ତାର ମଧ୍ୟେ ଅଛି ଅଛି
କେଉଁ କାଲାଂତରର ଆହ୍ୱାନ ।
ଏବଂ କିଏ କହେ—"ବିପ୍ଲବ ହିଁ ଜନତାର ଉତ୍ସବ ମହାନ ।"
ସିଏ ଯିଏ ହେଉ, ହେଉ ସେ ଏଠାର, ଛାତ୍ର ଅବା କୃଷିକାର
ଅବା ଚେୟାରମ୍ୟାନ—
ବିପ୍ଳବ ହିଁ ମହାକବି । ବିପ୍ଳବହିଁ ଅଗ୍ରଯୁଗୀ ନବ ଅଶ୍ୱିନର ।
ବହୁନୀଳ ଶୈବରେ କରେ ଯା ଉତ୍‌ଖାତ,
ଗଢ଼େ ଯାହା ନବ ନବ ମାତୃମୂର୍ତ୍ତିମାନ
ଦେବାପାଇଁ ଜନ୍ମ ଜନ୍ମାଂତର ।
( ଜନ୍ମ ଯାର ଅତୀତର ଭସ୍ମକୀଟ୍ କରିବାକୁ ଇତି ଯା ସ୍ଥାବର । )
ସେ ସୁଂଦର, ଚିର ଭୟଂକର ।
ପ୍ରଥମ କଦଂବ ଫୁଲ ତାହାହିଁ ଫୁଟାଏ ।
ସ୍ୱର୍ଣ୍ଣେ ତାର ପୁଣି ବୃଂଦାବନ
କମିକ୍ଷେ ପାଲଟି ଯାଏ ଏକ କୁରୁକ୍ଷେତ୍ର,
ଏକ ମହା ଧ୍ୱଂସର ଅଂଗନ ॥

—ଅକ୍‌ଟୋବର, ୧୯୬୦



# ପୋଷ୍ଟମର୍ଟମ

ସ୍ୱପ୍ନେ ଦେଖିଥିଲି ମୁହିଁ ନାଶଯିବ ପୁର ।
ନଗରଲୋକେ ହେବେ ଘରଛାଡ଼ା ।
ମହାମାରୀ ହେବ, ମରୁଡ଼ି କାଂତାର
ଘୋଟିଯିବ ଚରାଚର, ଧ୍ୱଂସ ହେବ କାଳ ।
ଉପୁଜିବ କଳିଗୋଳ, ହେବ ଗୃହଭେଦ ।
ବାପ ବେକେ ପୁଅ ଛୁରି ଦେବ ।
ଭାଇ ଭାଇ ଲଢ଼ାଇବେ ଯୁଦ୍ଧ ।
ସ୍ତ୍ରୀଏ ବୁଡ଼ିବେ କୂଳ, ଗିରସ୍ତେ ଭାର୍ଯ୍ୟାଙ୍କୁ ।
ପୃଥ୍ୱୀ ମାତା ହେବ ଟଳମଳ ।
ଗ୍ରାମଦେବତୀଏ କରି ଆଖି ଛଳଛଳ
ହେଉଥିଲେ କସ ଫୁସଫାସ,
କଂଚୁକୀଏ ହୋଇ ଉର୍ଦ୍ଧ୍ୱଶ୍ୱାସ *
ଧାଉଁଥିଲେ ଈଶ୍ୱର ମୁହାଁରେ ।
ପୁଣି ଦେଖିଥିଲି, କୃଷ୍ଣବର୍ଣ୍ଣର ମଣିଷ
ବେକରେ ମଂଦାର ମାଳ, ତୈଳାକ୍ତ ଯେ କେଶ
ପିଂଧି ନାଲି ଲୁଗା ବୁଲୁଥିଲେ ଏଣେ ତେଣେ ।
ସେମାନଂକ ଠୋ ଠୋ ହସ
ଶୁଭୁଥିଲା ଆସି ମୋର କାନେ ॥
ପ୍ରତେ ହେଉଥିଲା, ସବୁ ରେଲ ଷ୍ଟେସନରେ
ଇଂଜିନ୍ ଗୁଡ଼ାକ ପଡ଼ି, ଦରମଲା ଘୋଡ଼ା
ପରି ଖାଲି ଧକଉଚି, ଦୁର୍ଦାଂତ ଖରାରେ ।
ଏବଂ ଏରୋଡ୍ରମ ପଡ଼ିଆରେ
ଡେଣା ଛିଂଡା ପଡ଼ିଛଂତି ଏ ବିମାନଗୁଡ଼ା ।
ମନେହୁଏ, କଂକ୍ରିଟ ମିଶାଉଥିବା ଅଦଡ଼ ଅଂଧଡ଼ା

---

କଂଚୁକୀ—ହିଂଜଡ଼ା (ନପୁଂସକ)

ଏକ ଭାଙ୍ଗା କ୍ରେନ୍‌ର ଉପରେ
ଶାଗୁଣାଟେ ବସାବାନ୍ଧି ରହିଅଛି,
ଧରି ଛୁଆପଲେ ।
ଏବଂ ସେ କଂକ୍ରିଟ୍ ହାଣ୍ଡି ତଳୁ କାଢ଼ି ନେବ
ପିଲାଏ ଉଚ୍ଛନ୍ନ ହେଲେ ବୋଧେ ମାଆ ତାଙ୍କ—
ଯେତେ ଇଚ୍ଛା ତେତେ ରହି ମିଳିବ ଆହାର ।
ମଢ଼ କୁଢ଼ କୁଢ଼ ହେବ, ଆସୁଛି ତ ବେଳ ।
ତା'ପରେ ଘୂରିବାକୁ ଲଗେ ସେ ହାଣ୍ଡିଟା
ଭୀଷଣ ଗର୍ଜନେ ।
ପୁଣି ଦେଖେଁ, କାହୁଁ ହଲେ କାଳିଆ କୁକୁର
ହଠାତ୍ କରନ୍ତି ଆସି ମୈଥୁନ ମୋ ଆଗେ ।
ଏବଂ ଏକ ଧଳା ବତକକୁ ଗୃପା ଦେଇ, ବେଗେ
ଛୁଟିଯାଏ କୋଇଲାର ଟ୍ରକ୍ ।
ମନେହୁଏ ତିନି କାଳ, ତିନି ଲୋକ, ତିନି ରଙ୍କୁ ଯାକ
ଅଭିନ୍ନ ଓ ଏକ ।
ଏବଂ ମୁଁ ସେଇ ନିଃସଙ୍ଗରେ ଏକାନ୍ତ ଏକକ [

—ମାର୍ଚ୍ଚ, ୧୯୭୧



# ମାଆ

('ଦଗନ୍ତ ମ୍ୟୁଜିୟମ'ରେ ସଂରକ୍ଷିତ କାଖରେ ଶିଶୁଧର ଦଣ୍ଡାୟମାନା ଏକ ପ୍ରାଚୀନ ମାତୃକା ମୂର୍ତ୍ତି ଉଦ୍ଦେଶ୍ୟରେ············)

ଏ ଗଛରୁ ସେ ଗଛକୁ ଦ ଗୋଡ଼ ଲଂଫାଇ
ଘଡଅଧେ ନଇବାଂକେ ଆଂବତୋଟା ପାଖ
ଯେକେ ନଜ ପିଲାକୁ ଯେ ଏଂଡୁଡ଼ି ଜଳାଇ,
ଏବଂ ଯେ ବାନରୀ
ଏ ଗଛରୁ ସେ ଗଛକୁ ଡେଇଁ ଯାଏ କୋଳେ ଯାକିଧର ଆପଣା ପିଲାଟି
ଉଭୟେ ଏ ମଧ୍ୟାହ୍ନର ପଲାତକ ନାରୀ ।
ଜଣେ ସଚେତନ,
ଅନ୍ୟ ଜଣେ ଭୟାର୍ତ୍ତ, ବିବର୍ଣ୍ଣ ।
ତଥାପି ସେମାନେ ମାଆ, ସେମାନଂକ ସ୍ତନ
ଗୁହିଁରହେ ଶିଶୁର କ୍ଷୁଧାକୁ ।
ସେଇ ସ୍ତନ୍ୟ-କଣା
ହୋଇଚ ମ୍ୟାଡୋନା ।
ଦେହ ଯାଇଅଛୁ ଭସ୍ମ ହୋଇ ।
ଅତଳ ମାଟିର ତଳେ, ଅଗ୍ନିର କୁଇରେ
ଦେହ ପଚେ, ଦେହ ଜଳେ,
ଦେହ ରହେ ନାହିଁ ।
ମିଶିଯାଏ ତାହା
କ୍ଷିତି, ବ୍ୟୋମ, ମରୁତ ଓ ଅପ୍
ଏବଂ ତେଜରେ ।
ତାହା ସହ ତା ଆଦମ ପାପ
ହୁଏ ଏକାକାର
ନଖିଳ ସତ୍ତ୍ୱରେ ।
ରହେ କଂଭୁ ତାର ସେଇ ସ୍ତନର ପିପାସା
ଶୁକ୍ଳା ନଶିଥିନୀ ପର କବୋଷ୍ଣ ପଠାରେ ।
ତୁମେ କ ତା ରୂପାଂତର
ଆସ୍କୃତ ବେଦନା ??

—ନଭେଂବର, ୧୯୭୦



# ଏ ଶାଢ଼ୀଟା

ଏ ଶାଢ଼ୀଟା ଭଲ ନୁହେ,
ଯେଣୁ ତାହା ନୀଳକଇଁ ପରି ତୁମ ଦେହେ,
ଜଡ଼ିଯାଏ ।
ମନେହୁଏ ସମସ୍ତ ଶର୍ବରୀ
ଯେଉଁ ପରି ହୋଇଅଛି ଆସି ଏକୀଭୂତ
ତୁମ ଦେହେ, ଦିଶେନା ଦିଗଂତ ।।

ଏ ଶାଢ଼ୀଟା ଭଲ ନୁହେ,
ଯେଣୁ ତା ତୁମର କବରୀ
ସଂଗେ ମିଶି ହଜିଯାଏ,
ମନେହୁଏ ସଂଧ୍ୟାକାଶ ଦେହର
ମେଘମାଳା କରିଛି ବିସ୍ତାର
ଆପଣାର ବେଦୁଇନ ମାୟା ।
ଲଭିଯାଏ ତେପାଂତର,
ଅଶ୍ୱେତ ଥର ସ୍ଥିର ନୀଳ ଛାୟା ।।

ଏ ଶାଢ଼ୀଟା ଭଲ ନୁହେ,
ଯେଣୁ ତାହା କରେ ଆବରଣ
ତୁମର କଂଦୁକ ସମ
କଳା ମାର୍ବେଲର ବେନି ସ୍ତନ ।
ସକାଳର ଧୂଆଁ ଓ କୁହୁଡ଼ି
ମଂଦିରର ଦଧିନଉତି
ଘୋଡ଼ାଏ ଯେପରି,
ଦିଶେ ଖାଲି ଶୀର୍ଷବିଂଦୁ ଫୁଟି ।।

ତୁମେ ପିଂଧ ସେଇ ଶାଢ଼ୀ
ଶିଶିଫୁଲି ପରି,

ଅଥବା ଯା ପୂର୍ଣ୍ଣିମାର
　　　　　　　　　　ନଈପଠା ଭଳି
ତୁମର ସେ ନୀଳ ଦେହ
　　　　　　　　ଚେଉର ଭଉଁରୀ
ରଖିବ ବା ଧରି ।
ତୁମେ ପିନ୍ଧ ସେଇ ଶାଢ଼ୀ
ସୀମିତ ଯା କରିବ ତୁମର
　　　　　　　　ଦେହ-ସରହଦ ।
ପୂର୍ଣ୍ଣିମାର ଦାଲୁଚର ପର
　　　　　　　　ଶାଢ଼ୀ ପିନ୍ଧ ।
ଛନ୍ନାଇ ଯା ଦେବ ତୁମ
　　　　　　　　ଦେହରଇ ହଦ ॥

—ସେପ୍ଟେମ୍ବର, ୧୯୭୦



# ଜଗନ୍ନାଥଙ୍କୁ ଏକ ଜଣାଣ

(ଶ୍ରୀଗୁଣ୍ଡିଚା, ୧୯୭୦ ଉପଲକ୍ଷରେ……)

"ଜଗନ୍ନାଥ ହେ
କିଛି ମାଗୁନାହିଁ ତୋତେ ।
ଧନ ମାଗୁ ନାହିଁ
ଜନ ମାଗୁ ନାହିଁ ।
ମାଗୁଛି, ଶରଧାବାଲିରୁ ହାତେ ।" (୧)
( ଏକ ଜଣାଣରୁ )

"ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ପାଉ…।" (ଭୀମଭୋଇ)

ଶରଧାବାଲି ତ କଆଁର କଆଁର,
ସେଥିରେ ପଡ଼ିଛି ସିଆ !
କିଏ ସେ କଳଣି ଶଂଖ ମଳମଳ
ପାଚଶ୍ଚ ଯେବେଟି ଠିଆ—
ପକାଏ କେ କଂଚା-ବାଡ଼
କାହାର ପାଉଁଶ ହାଡ଼
ପୋଡ ହୋଇପଡ଼େ ଲଭିବାକୁ ଶେଷେ
ସାତ ଲହଡ଼ିର ମୋଡ଼ । (୨)
ଶରଧାବାଲି ତ ପାହାଚ ପାହାଚ
ମାଡ଼ିଛି ଗିଉଳିଲତା,
ବାଲି କଂକଡ଼ା ସେ ଭୂଇଁ ତଳେ ତଳେ
ଖୋଳୁଥାଏ ନିତ ଗାଡ଼ ।
ଲଗିଅଛି ହଟହଟା ।

---

(୧) ଶାରଧା ବାଲି—ପୁରୀରେ ଜଗନ୍ନାଥଙ୍କ ରଥଦାଣ୍ଡଧୂଳି ।

(୨) ସାତ ଲହଡ଼ି—ପୁରୀ ସମୁଦ୍ର କୂଳସ୍ଥ ଭକ୍ତକବି ଜଗନ୍ନାଥ ଦାସଙ୍କ ସମାଧି ପୀଠ—ଯାହା ସାତ ଲହଡ଼ି ମଠ ନାମରେ ଖ୍ୟାତ ।

କେଉଁଠିକି ଯିବ ପ୍ରଭୁ ହେ !
ଗୃହଆଡ଼େ ଖାଲି ହୁଡ଼, ବାଡ଼, ହାଡ଼
କଂଶୁ କଣ୍ଟକ ସବୁ ହେ !!
ତଂବୁ କରଂଧ ଯେ ନୀଳକଂଦର,
ଉଡ୍ଡୁଚି ପତିତପାବନ ଚଡ଼ିଲ,—
ଯେଉଁଠାରେ ଦ୍ୱିଜ, ଯେଉଁଠି ଶବର,
ହିଂଦୁ ସହିତ ଯବନ, ଇତର,
ରାଜା ପ୍ରଜା ଧନୀ ଦରିଦ୍ର ନର
ଭୁଂଜେ ଏକାଠି ଅନ୍ନ ହେ ।
ଫୁଟେ ସାମ୍ୟର ଜହ୍ନ ହେ
(ଚିର ମୈତ୍ରୀର ଚହ୍ନ ହେ)
ଶାଲବେଗ ଗାଏ ତା ହୃଦ ଦଇନ
ଚୈତନ୍ୟ ଯେ ଲୀନ ହେ ॥

ସବୁ ଖଂଡ ଖଂଡ, ସବୁ ତ ଭାଂଡିଆ !
ଚକାଡୋଳା ଟେକ ଦେଖୁଚି ଖଂଡିଆ ।
ବରଷକେ ଥରେ ରଥେ ବଜେ କିଏ
ଭାବୁଚ ତ ସବୁ କାମ ଗଲା ସରି ।
ଶ୍ରୀମଂଦରୁ ଥରେ ଶ୍ରୀଗୁଂଡିଚା ଯାଇ
ଭାବୁଚ ଜିଣିଲ ଗଡ଼ ହେ ।
କହ ହେ ଖଂଡିଆ ! ଖଂଡ ଖଂଡ ପୃଥ୍ୱୀ
କେଉଁପରି ହେବ ଯୋଡ଼ ହେ ॥

ଜୟ ଓ ବିଜୟ ଦୁଆରେ ତୁମର
ନାହିଁ କି ହେ ଜଗୁଆଳ ?
ଦିଏ ନାହିଁ କି ହେ ଖବର ଆଜି ଯେ
ପୃଥ୍ୱୀ ଯେ ଟଳମଳ……
ବୋଦଇ ଧରଣୀ ହୋଇ କହିଁ କହିଁ
ରତ୍ନ-ବେଦୀରେ ତା'କୁ ବାଜେ ନାହିଁ ?
ସେବୁଚ ତ ଦିବ୍ୟ ଅନ୍ନ ଓ ଡାଲି,
ରାଇ ଓ ମହୁର, ବେଶର ।
(ପିଠାପଣା ପାନ ପନୀର)

ଆଳତିର ଅବକାଶ ଯେ
ଭାଇ, ଭଉଣୀ ଓ ନକେ ।
ବଡ଼ସିଂହାର ଧୂପ ଗୁଲଅଛୁ
ଧୂମଧାମ କତ ପ୍ରଚୁର ।।
ମୁଠାଟିଏ ଭାତ, କଲେ ରୁଚି ପାଇଁ
ମଣିଷ ଆଗ୍ରେ ମଶାଣିର ଜୂଇ ।
ଯୁଦ୍ଧର ନାଆଁ ଜଳେ ଦେଶେ ଦେଶେ
ଗୃହିଁ ଭୂଇଁ, ଆଉ ଭୂଇଁ ଯେ—
ଲାଗିଚ ସବୁଠି କି ଗଂଡଗୋଳ
କେଉଁଠି ତୁମର
'ବ୍ରହ୍ମାଂଡ ଭୂଗୋଳ' ?
ଭକ୍ତର କରତାଳ ଯେ !!

କହ କହ ଆହେ କାଳିଆ !
ସଗରେ ଧୂମ ବଳିଆ—
ବଳିଆରଭୂଜ ଭାଇ ଯେ ।
ଭଉଣୀ ହଳଦୀ-ମୁହାଁ ଯେ ।
ଛଅଏ କି ଦାରୁ ଯାଇଚ ପାଲଟି
କହ ସବୁ ଖୋଲି ଚଉଷଠି ଗଂଠି,
କାହିଁ ସେ ଚକ୍ର ? ଲଂଗଳ କାହିଁ ?
ଶଂଖ ରଖିଚ କେଉଁଠି ?
ଅବତାର ତୁମ ଶଂଖ ଦ୍ୱୀପରେ
ତାଣିବାକୁ ଯଦ୍ଧ ଧାନ ଦଳତରେ !
ନଂଦିଘୋଷ ଓ ତାଳଧ୍ୱଜ ଚକ
ଖାଲି ଦଳୁଥିବ ଝଣାଲୀର ବେକ ?
ମଣିଷ ଶତ୍ରୁ କେତେଣେ ନର୍ଭୀକ,
ଚନ୍ଦ୍ରେ ଶାଂତିର ଗାହାଚି ।
ହାଡଆର ଯେତେ ମାହାଚି
ସବୁ କରେ ଠୁଲ, ଆଉ ପୁଣି କରେ
ମାଣବାର ଯେତେ ପାଇଟି
ତୁମ ଚକାଡୋଳା ଦେଖି କି ଦେଖନା
କହ ହେ ମାଦଳ ! ହେ କାଳିଆ କହ୍ନା !
ନୀଳ ଶଇଳର ମାଂଡଗ ଧୂମେ ନା
ଯାଇଚ ଠେଙ୍ଗୁଆ ପାଲଟି !!

ତୁମେ ପରା ଆହେ ବଉଧ-ମୂରତ
କସିତ ଆଗମେ ଧର୍ମ-କୀରତ ।
ତୁମେ ପରା ଚର ଶାନ୍ତ-ପ୍ରଣତ ।
ନୀଳଚକ୍ରରେ ବାନ୍ଧିଚ କନାତ ।
ଲଭାଇବ କାହିଁ କିଏ ହେ !
ଜୟ ମହାବାହୁ ଜୟ ହେ ।
ଜୟ ମହାପ୍ରଭୁ ଜୟ ହେ ।।

—ଜୁନ୍, ୧୯୭୦



# ଆଶ୍ଚର୍ଯ୍ୟ

ଆମର ବି ଋଷି ଲୋଡ଼ା, ଲୋଡ଼ା ଏକ ମହାନ ପୁରୁଷ,
ଯାହାପାଇଁ ବେଳେ ବେଳେ ଛପାଉଁ 'ଓ୍ୱାଂଟେଡ୍'
ଖବରକାଗଜେ ଏବଂ ସବୁ ରାସ୍ତା ଛକେ ।
କିଣି କିଛି ନଶ, ଦାଢ଼ୀ ଏବଂ ପରଚୁଲା
କରୁଁ ବି ତଲାସ
ଦେଶସାରା, ଏବଂ ଶେଷେ ପକଡ଼ାଉ କରୁଁ
ଏକ ସାଦା ଗୋବେଚାରା ଲୋକେ ।
କରୁଁ ତାକୁ ମହାତ୍ମା, ଫହାତ୍ମା ।
ରାଜର୍ଷି, ମହର୍ଷି, ସଂଥ ଅବା ଦେବତାତ୍ମା ।
ଉଡ଼ାଉଁ ପତାକା ପରି ତାକୁ ଆମ ସଂସ୍କାର ଚାଳରେ
ଟାଂକିବାକୁ ଯେତେ ସବୁ କଣା,
ଫଟା କାଂଥ, ଆହା ସେ ବିଚାରା ଭଲ ମଣିଷଟି !
ଲୋଚା କୋଚା ହୋଇ ଶେଷେ କହୁ ହୁ-ନା
ଋଷି ବନେ, ପାଲଟେ ସେ ଅବତାର ଗୋଟି
ଆମ ଝଟ୍କୁରେ ।
ମୋତେ କିଂତୁ ଡରମାଡ଼େ ଏଇ ଋଷି, ଫଷି,
ରହେ ଦୂରେ 'ଶକ୍' କାଳେ ଲାଗିଯିବ ବୋଲି ।
ସଂସ୍ଥା ମୁହେଁ ଶୁଣି ତାର ନାମ ବାରଂବାର
ଭଲ ଲାଗେ ଭେଲ ।
ମନେହୁଏ ଅଛି କିଛି ନଷ୍ଟେ ଝଁକମାରି ।
ଖାଂଟି ଲାଗେ ଝୁଠା ।
(ଆମେ କୁଳାଂଗାର ଦଳ, ଘୋଡ଼ାମୁହାଁ ବାଳୁଂଗା କେତୁଟା ।)
ମୋତେ ଡର ମାଡ଼େ ସବୁ ଜୟଂତି ଓ ତୋଡ଼ା,
ଥଳୀଭେଟି, ପୂର୍ଣ୍ଣ ପତ୍ରଆରା ।
ଶୋକସଭା, ବିଶେଷାଂକ, ଯାହା କିଛି ଭଡ଼ା
ଦେଇ ସହଜରେ କରିହୁଏ, (ଯେଣୁ ଆମେ ସମସ୍ତେ ଝାଟରା)

ତେଣୁ ମୁହଁ ରହେ ଦୂରେ, କହେ ସତ୍ ସତ୍
(ଝିଟିପିଟି ପଣ)
ବେଶ, ବେଶ୍, ଠିକ ଅଛୁ, କଣଯାଅ ଯା ସବୁ କରୁଚ,
ତମ ପଛେ ରହୁଅଛୁ ମୋର ଦସ୍ତଖତ ।
ମୋତେ କିଂତୁ ଭଲ ଲାଗେ କାଏ ଜଣେ ମଣିଷର ସ୍ୱର
କହୁବ ଯେ "କରେ ସଇଁ, ଭଲ ଅଛୁ ?"
ଘରେ ସବୁ ଭଲ ?
ଝିଡ଼ ଯାଉ କାଆଁ ?
କଲିକତାରୁ ତୁ କେବେଠୁ ଫେରିଲୁ ?
ଅଇଲୁ । ଅଇଲୁ । ଦେଖେଁ ତୋତେ ଟିକେ ॥"

ତାହାପରେ ମୁର୍ବର ଖଇନା ଏକ ଧକ୍କା ଦେଇ
ଠେଲିଦିଏ ତାଂକ ପାଖେ ।
ଏବଂ ସେ ପକାଂନ୍ତି କୁଂଡାଇ ।
ଦାନ୍ତ ତାଙ୍କେ କଟ କଟ, ମୁର୍ବର ଖଇନା କହେ ପାଇଲୁ ପାଇଲୁ !
ଭଲ ଲାଗେ ମୋତେ ଏକ ମଣିଷର ସ୍ୱର
ଯିଏ ପଚାରିବ ମୋତେ ଦେଖା ହେଲେ ମୋ'ର କୁଶଳ ।
ଦୃଷ୍ଟିହୀନ ଆଖିପତା କରି ଛଳ ଛଳ—
"କରେ ସଇଁ ଭଲ ଅଛୁ ? ଘରେ ସବୁ ଭଲ ?"

—ଫେବୃୁୟାରୀ, ୨୩, ୧୯୭୧



# ସାହିତ୍ୟ ଓ ସମାଜବୋଧ

ଆସିଥିଲେ ସେ ବଡ଼ ସଖାଳୁ
ପାହାଁତା ଗାଡ଼ିରେ,
ବାଣୀ ସାଧକ, ତରୁଣ ବୈତାଳିକ ।
ସାହିତ୍ୟର ଆସରେ ଆଜି ଦେବାକୁ ଭାଷଣ,
ଆସିଥିଲେ ସେ ସୁଦୂର ଜିଲ୍ଲାରୁ
ହୁଏତ ସିଏ ଜଣେ ବା ବାହ୍ମଣ ।
ଅବିବାହିତ, ଗୋଟେ ଅଧେ କରଂତି ଟ୍ୟୁସନ ।
ନାଲି ପେଂଟଟା ଯଦିଚ ସରୁ
ହୋଇଚି ପଛୁ ସିଆଁ,
ହାଓ୍ୱାଇଟାର ପକେଟମାରୁ,
କଟିଛି ଗୋଟେ ଆଁ ।
ଗ୍ଲାଢ ପକଟେ ସ୍ୟାହିର ଦାଗ
ରଚିଛି ମାନଚିତ୍ର ।
ସବୁଙ୍କୁ କିଂତୁ ଚାଂକଦେଇ ଝୁଲାଇଛଂତି ତତ୍ର
ନାଲି ରଂଗର ଡେଲିଗେଟ୍‌ର କାର୍ଡ଼ ।
ପିନ୍ ଆଂଟି କରି ସେ ନିବାଡ଼ ।।

ଡାହାଣ ହାତେ ଏଟାଚି କେସ୍, ବାମହାତରେ ତାଂକ
ବସ୍‌ଷ୍ଟାଂଡ୍‌ରୁ କିଣା ଶୋଭେ ପତ୍ରିକା ସେ ଏକ ।
ଏବଂ ଅଛି ଗତକାଲିର ରବିବାସର ଖଂଡେ
କାଗଜ, ଯହିଁ ଲେଖିଛଂତି ସେ କବିତା ପ୍ରାୟ ଖଂଡେ ।
ସେଟାରେ ସିଏ ବାରଂବାର ପକାଇଯାଂତି ଆଖି,
ରିକ୍ସା ପରେ ଯିବାବେଳେ ବା ଗୁଳିଲା ବେଳେ ସେକ ।
କଟକର ଧୂଳି ବତାସେ ମଣଂତି ଟିକେ ତାଜା
ପ୍ରତିନିଧି ସେ ଆସିଛଂତି ଦୂର ଜିଲ୍ଲାରୁ ସୋଜା ।

ସକାଳେ କରି କବିତାପାଠ ବଡ଼ଛତାର ମଠେ
ମହନ୍ତ ସିଦ୍ଧ ବାରଂଗ ଦାସେ ଓଳଗି କରି ଗୋଟେ
ଭାବି ସେ ଛଂଦ ସାଧନା ତାଂକ ହୋଇଲା ଫଳବନ୍ତି ।
ଚୌରାଶୀ ଆଜ୍ଞା ସିଦ୍ଧ ବାବା ପ୍ରସନ୍ନ ଯେ ଅତି ।
ସାହିତ୍ୟର ଗୋଦାମ ସେଟା, ଭାରତୀଂକ ପୀଠ ।
ସେ ତୁଠେ ଯିଏ ପିଇବ ପାଣି ମୂର୍ଖରେ ପଇଠ ।
ବରଷକେ ଜଳେ ଯେ ଥରେ ସରଗରମ ଅତି
ସଂଜବେଳେ ନଡ଼ିଆଗଛେ ସେଠାରେ ଲାଲ୍‌ବତି ॥

ସଂଧାବେଳେ ହୋଇଲା ସଭା, ଭାଷଣ ଦେଲେ ସେହୁ,
ସାହିତ୍ୟରେ ସମାଜବୋଧ କହିଲେ ସିଏ ଚିହ୍ନୁ ।
ତା'ପରେ ସିଏ କହିଲେ ସିଦ୍ଧ ବାବାର ମୁହେଁ ଚାହିଁ
କବିମାନଂକୁ ରାଜକୋଷରୁ ମିଳିବା କିଛି ଚାହି ।
ରାଜକୋଷର ବୃଦ୍ଧି ଯଦି ବ୍ୟାହତ ହୋଇଯାଏ
ତେବେ ମଠରୁ ମିଳିଲେ କିଛି ନ ଥିବ ପରବାୟେ ।
ଭାଷଣ ପରେ ରୁମାଲେ ନିଜ ମୁହଁରୁ ଝାଳ ପୋଛି,
କହିଲେ ସିଏ, ପଚାରିପାର ପ୍ରଶ୍ନ ଥିଲେ କିଛି ।
ବିଶେଷ କରି ଚାହିଁଲେ ସିଏ ମହିଳା ଧାଡ଼ି ଆଡ଼େ
ମାତ୍ର ହାୟ ! ପ୍ରଶ୍ନ ନାଇ କା ଓଠେ କଂଠନାଡ଼େ ।
ପ୍ରଶ୍ନ ନାଇ, ପ୍ରଶ୍ନ ନାଇ ଶ୍ରୋତା ବା ଶ୍ରୋତ୍ରୀ ମନେ
ପ୍ରଶ୍ନ ସବୁ କୁଆଡ଼େ ଗଲେ ? ତୀର୍ଥ ପର୍ଯ୍ୟଟନେ ?
ଶେଷରେ ସିଏ ନିଜ ଆସନେ ପଡ଼ିଲେ ଯାଇ ବସି
ଫେରିବା କଥା ଇଲଟେ ତାଂକ ପଡ଼ୁଚି ମନେ ବେଶୀ ॥

ସାରାଟା ଦିନ ବହୁତ ସିଏ ବୁଲିଲ ତ ଛଂଦ ଭୂଆଁ
ଷଡ଼ରସରେ ମନଟା ଭରି, ପେଟଟା ଖାଁ ଖାଁ ।
ଭାଷଣଠାରୁ କରତାଳି ସେ ଭାଷଣ ଛଂଦ ଦେଇ
'ବାହାବା'ଠାରୁ 'ଶୁଣଶୁଣ' ବହୁତ ଧ୍ୱନି ହେଇ
କ୍ଳାଂତ ବଡ଼, ଫେରଂତ ପରେ ଦଶଟା ଗାଡ଼ି ଧରି,
ସଂଧାବେଳ ଦୈନିକରୁ ଝଂଡେ କିଣି କରି,

କଲେଜଛକ ପାନଦୋକାନେ ରେକ୍ସା ଟିକେ ରଖି
ପାକଟେ କିଣି 'ଗୃରମିନାର୍' ଦକ୍ଷିଣ ପାନ ସାଙ୍କ ।
ପହଂଚିଲେ ସେ ଆପଣା ଘରେ ଖୁବ୍ ଭ୍ରୁକ୍ତ ପଦେ
ଶୋଇଛଂତି କବାଟ କଳି ଯେଝାର ସିଏ ନଦେ ।
ନକେ ସିଏ ପଢ଼ିଲେ ଶୋଇ ପିଇ ଗିଲାସେ ପାଣି,
ସକାଳ ହେଲେ ଦେଖାଯିବ, ଜୟ ମା ବୀଣାପାଣି ॥ *

—ଅକ୍ଟୋବର, ୧୯୭୦



* ଜଣେ ଆଧୁନିକ ମାର୍କିଣ କବି ଋତ୍ ହୁଇଟେମୋରଂକର "The Cultural Conference" ନାମକ କବିତା ଦ୍ରଷ୍ଟବ୍ୟ ।

# କୁସ୍ତି

(ଏକ ବିଜ୍ଞାପନ)

ଆସିଛଂତି ପହ୍ଲମାନ ଯେ
ଜଣେ ହରିଆନା,
ଜଣେ ହିମାଚଳ ଦେଶୁ ।
(ଏକ ଦେଶ ସଂତମାନେ ଭୁବନ ବିଖ୍ୟାତ,
ଅନ୍ୟଠାର ଗାଈସବୁ କରେ କଲ୍‌ମାତ୍ ।)
ଅସିଛଂତି ସେ ପହ୍ଲିମାନ !
(ଦାରାସିଂହ ପ୍ରତି ଯେ ଆହ୍ୱାନ )
ଖୋଦ୍ ଦାରାସିଂହ ତାଂକୁ କରିବେ ମହଣ ।
ଜଣେ ଖାଏ ଗୋଟାଏ ଫଡ଼ିଆ,
ମହଣେରୁ କମ୍ କିଛି ଚଣା,
ଅନ୍ୟ ଖାଏ ଶହେପଟ ରୁଟି,
ଆହୁରି ବଢିଆ
ଗୁଆଘିଅ ଟିଣେ, ଏବଂ ଜଳଖିଆ
କରେ ସେହୁ ପାଂଚଗଂଡା ଅଂଡା ।
ଟିକଟ ପାଂଚଟି ଟଂକା ସର୍ବନିମ୍ନ,
ସର୍ବଉଚ୍ଚ ରୂପେୟା ପାଂଚଡା ।
ଆଉ ଯଦି ଦେଖିବାକୁ ଚାହୁଁଚ ଭୋଜନ—
ଦୁଇଗୁଣ ଟିକଟର ଦାମ ।
ଏ ସୁଯୋଗ ଗଲେ ମିଳେ ନାହିଁ ।
ଅତ୍ୟଂତ ବିରଳ ଏହା, ନୁହେ ହରଦମ ।
ସବୁଠାରୁ ଚମତ୍କାର ତାଂକର ମାଲିସ,
ଅଧଟିଣେ ସୋରିଷର ତେଲ ଯାଏ ପଶି
ସେମାନଂକ ଗର୍ଦ୍ଦନରେ, ମର୍ଦ୍ଦନ କାଳରେ,
ଏବଂ ଦର୍କାର ହୁଏ ଗୋଟାଏ ଗାଡ଼ିଆ
ଗାଧୋଇବ ପାଇଁ ।

ଟିକଟର ଦାମ ଟିକେ ଚଢ଼ା,
ଜାଗା ମଧ୍ୟ ଅଛି ଖୁବ୍ ଥୋଡ଼ା ।
ଜଳହୀନ ଏ କଲ୍ଲପଡ଼ିଆ
ତଥାପି ଟିକଟ ଯଦ ବେଶି ବିକ୍ରି ହୁଏ
ଦିନକୁ ଦିଥର ଦହଲଗି କରିହୁଏ ।
ହରିଅନା ଏ ସୁଯୋଗ ଖାଇ
ଆସିଛନ୍ତି ପହଲ୍‌ମାନ ଯେ
ହରିଆନା ରାଜ୍ୟୁ ଧରିହୋଇ ॥

—ଡ଼ିସେଂବର, ୧୯୭୦



# ମୋତେ ଖୁଣ୍ କର

ମୋତେ ଖୁଣ୍ କର, ମୋତେ ଖୁଣ୍ କର,
ମୋତେ ଖୁଣ୍ କର,
ଜଳୁଛ ଆଜ ଆସମାନ ।
ଜଳୁଛ ତ ଜାହାନ୍ନାମ ।
ଏଇ ଥଂଡା ମକ୍‌ସୁ ପୃଥିବୀରେ ମୁଁ
ଆସି ହେଲିଣି ନାକେଦମ ।
ପଗ୍ସ ପଣସ ପଶ ମୁଁ ଏଠି
ସଢ଼ୁଛି ଦେଖ ହରଦମ ।
ମୋତେ ଖୁଣ୍ କର, ମୋତେ ଖୁଣ୍ କର
ମୋତେ ଖୁଣ୍ କର ॥

ମୋତେ ଖୁଣ୍ କର,
ଯେଣୁ ମୁଁ ଜଣେ ନାଜର ଉମେଦାର,
ଏଠାର ସବୁ ସଢ଼ା ପୋକଡ଼ା ଖାତା ଓ ଖସଡ଼ାର ।
ମୋତେ ଖୁଣ୍ କର,
ଯେଣୁ ମୁଁ ଅଟେ ଛୟର ଖଡ଼ଆନ ।
ଯେଣୁ ମୁଁ ଅଟେ ଜଣେ ଇଜାରଦାର ।
ଏଠାର ସବୁ ଭୁଲ, ଝୁଟ୍ଟା ମାପ ଓ ଓଜନର ॥

ମୋତେ ତୁମେ ଖୁଣ୍ କର,
ଯେହେତୁ ମୁଁ ପାରେନା କରି ଖତମ
ଏଠାର ଯେତେ ଚକଡ଼ା, ଛକ, ଛେକ ଓ ଦରଦାମ ॥
ମୋତେ ତୁମ ଧାରୁଆ ଆଖିରେ
କର ହେ ଆଜ ସୁପର୍ଦ୍ଦ ।
ପେଶ୍ କର ତୁମର ଯେତେ
ଫରଆଦର ଫର୍ଦ୍ଦ ।
ମୁଁ ଶୁଣିବ ସବୁ ଦେଇ

ମୋର ଫଟା ବୁକୁର ଦର୍ଦ୍ଦ ।
ମଣିଷର ଲାସ୍ ବୋହି ବୋହି
ମୁଁ ହେଲିଣି ବଳିବର୍ଦ୍ଦ ।
ଶବବାହକ ହୋଇ କଟିଛି
ଜୀବନ ମୋର ଅର୍ଦ୍ଧ ।
ପାଗଲ୍ ନାହିଁ କରି ମୁଁ ଏଠି ଗୋଟାଏ କାରେ ଜବ୍ଦ
ମୋତେ ଖୁଣ୍ କର, ମୋତେ ଖୁଣ୍ କର ॥

ମୋତେ ଖତମ କର, ମୋତେ ଖତମ କର
ମୋତେ ଖତମ କର
ତୁମର ଧାରୁଆ ଛୁରିର ତାଓ୍ୱାରେ
ମୋତେ ବାଉଲକର, ମୋତେ ବାଉଲକର, ମୋତେ ବାଉଲକର
ତୁମର ଗରମ ବୁକୁର ହାଓ୍ୱାରେ ।
ମୋତେ ସାବାଡ଼କର, ମୋତେ ସାବାଡ଼କର, ମୋତେ ସାବାଡ଼କର
ତୁମର ବଜ୍ର ମୁଠାର ଫାଓ୍ୱାରେ ।
ମୋତେ ଖତମ କର, ମୋତେ ଖତମ କର ॥

ମୋତେ ଖୁଣ୍ କର, ମୋତେ ଖୁଣ୍ କର ।
ଜଳୁଛି ଆଜି ଆସମାନ ।
ଜଳୁଛି ସାରା ଦୁସ୍‌ମନ ।
ଜଳୁଛି ସାରା ଇନସାନ ।
ମୋତେ ଖୁଣ୍ କର ॥

—ଜାନୁୟାରୀ, ୧୯୭୧



# ଚିଠି—୨

ଶଙ୍ଖ ଆଖିରେ ତାର ଏ କି ବିହ୍ୱଳତା !
ନବପତ୍ରର ନିତି ନୂଆ ନୂଆ ହୋଇବାର ଇତିକଥା ।
ପୁଣି ଅନନ୍ତ କାଳର ସମୁଦ୍ର-ଗମ୍ଭୀରତା ।
ସେ ଆଖିରେ ଜମେ ନୀଳ ଶଙ୍ଖ ଶାନ୍ତ କୋମଳ ଛାୟା,
ପୁଣି ଜୀବନର ଖର ମଧ୍ୟାହ୍ନ ଉଷ୍ଣ ବୁକୁର ହାଓ୍ୱା ।
ପୁଣି ସକାଳର ସକରୁଣ ପଦପାତ,
          ରାତ୍ରିଶେଷର ଶିଶିରର ସଦ୍ୟତା ।
ପୁଣି, ସୁନ୍ଦରତମ ଦୂରତ୍ୱର ବିବିଧତା ॥

ସେ ଆଖିରେ ମୁହିଁ ସ୍ନାନ କରି ଭାବେ
          ଏ ମୋର ସାଗର-ସ୍ନାନ ।
ଚେତନାରେ ଯାହା ହୁଏ ଅବହିତ
          ଯାହା କିଛି ଅଚେତନ ।
ସତ୍ତାର କାନେ ବାଜେ ରହି ରହି
ଅସତ୍ତାର ଯେଉଁଠାରେ
          ସ୍ୱଗତ-ସମ୍ବୋଧନ ।
ସେ ଯେପରି ମୋର ଯୁଗ ଯୁଗ ଧରି ଆକୁଳ ସନ୍ଧାନର
ନିର୍ଭୁଲ ଉତ୍ତର,
ଆଉ ସବୁ ଅପେକ୍ଷାର
          ଶ୍ରେଷ୍ଠତମ ସମାଧାନ ।
ମୁଁ ଦେଖେଁ ସ୍ଥାବର ଜଙ୍ଗମ, ବଣେ,
ଅରଣ୍ୟେ, ନୀଳାକାଶେ
କେବଳ ଦୁଇଟି ଆଖି ।
ଆଉ କିଛି ମୋର ସ୍ମରଣ ହୁଏନା,
          ପାରେ ନାଇ କିଛି ଦେଖି ।
କେବଳ ଦେଖେଁ ମୁଁ ପ୍ରଥମ ମେଘର ବର୍ଷା-ପ୍ରବଣ, ଶାନ୍ତ ମଧୁର
          ଦୁଇଟି ରେଶମୀ ଆଖି ।

ମୁଁ ଜାଣେ ସେ ମୋର ଅଦୃଷ୍ଟର ଏକଇ ମାତ୍ର ସାକ୍ଷୀ
ଅନନ୍ୟ ମୁହୂର୍ତ୍ତର ।
ମୁଁ ଜାଣେ ସେ ମୋର ଗୋପନ ଅର୍ଥ
ଗୂଢ଼ତମ ଇଚ୍ଛାର ।
ସେ ଯେପରି ମୋର ପ୍ରିୟତମ ନୀରବତା ।
ଆଉ ସେ ମୋର ନିଃଶବ୍ଦର ଅଭିଧାନ ।
ଶବରୀ-ଆଖିରେ ଦେଖେଁ ମୁଁ ତାର ତ
ନିଜକୁଇ ପ୍ରତିକ୍ଷଣ ।
(ଖୋଜେ ତା' ଭିତରେ ନିଜକୁ ତନ୍ନ ତନ୍ନ ।)
ଯେଣୁ ସେ ଆଖିର ଗୁହାଣୀ ତଳେ ମୁଁ
ଆଉ ଏକ ଗୁହାଣୀର
ପାଇଥାଏ ସନ୍ଧାନ । *

—ଅକ୍ଟୋବର, ୧୯୬୧



* ଶବରୀ-ଆଖି = ଏଠାରେ ଶବରୀ ଅର୍ଥରେ ବୌଦ୍ଧ ଚର୍ଯାପଦର ଶବରୀକୁ ଲକ୍ଷ୍ୟ କରାଯାଇଛି । "ଉଁଚା ଉଁଚା ପାବତ ତହିଁ ବସଇ ଶବରୀ ବାଲୀ ।" (ଶବରୀ ପାଦଙ୍କ ଦୋହା )

# ନଭେଂବର ଡାଏରୀ

ଆଖି ମୋର ନୁହେଁ ସ୍ୱାତି ତାରା, ଲୁହ ଯାର ହେବ ମୁକ୍ତାଫଳ ।
ଅଶ୍ରୁ ଆଉ ଚିର ହୋଇ ଅଶ୍ରୁ, ଆଉ ନିଜ ସଙ୍କଟରେ ଅଟଳ ।
ମନ ଯେବେ ବାତ୍ୟାଧ୍ୱସ୍ତ, ଶୂନ୍ୟ, ଏକ ନଷ୍ଟ ଉପକୂଳ,
ସ୍ମୃତି ଯାର ନିର୍ଜନ ସୀମାରେ ହୁଏ ଏକ ନିମଗ୍ନ ସହର
ସମୁଦ୍ର-ପ୍ଲାବନ ମଧ୍ୟେ. ସାତ ତାଳ ପାଣିର ଜଂଗଲେ ।
ଝାଉଁବଣ ଗାର ଟପି, ଚକ୍ ଚକ୍ ଶାମୁକାଠୁ ଦୂରେ ।
ଏବଂ ବହୁ ଖେଳଣା ଓ ଷଠୀଘର, ଭଂଗା ଘୋଡ଼ା, ଟିଣର ଜାହାଜ
ସହିତ ବହୁ କୁନି ପାଦଚିହ୍ନ, ଆଉ ବଡ଼ଂକର ଲଂବ ଲଂବ ଖୋଜ,
ଏବଂ ପରସ୍ପରେ ଜଡ଼ି ବହୁ ମୃତ ଦଂପତିଂକ ଦେହ
କାହାର ବଳିଷ୍ଠ ଭୁଜେ ଭିଡ଼ିଚି କା କଂକଣ, ବଳୟ ।
ଖସେ ଯା ପାଣିରେ ଆଜି ଯେଉଁପରି ଶୋଳର କଂଢେଇ,
ଏ ସବୁକୁ ଲୁହ ବୁଂଦେ ମୋର ସତେ ପାରିବ କି ଧୁଇ ??

ଏ ସବୁକୁ ଫାଂକି ଦେଇ, ଭୁଲିବାକୁ ଏଇ ଚିତ୍ରପଟ—
ବୁଲୁଥିଲି ଏଣେ ତେଣେ, ଯାଯାବର ଏପଟୁ ସେପଟ
ଦେଶଟା ସାରହିଁ, ମାତ୍ର ହାୟ ସଂଭବ କି କେବେ ପଳାୟନ
ଦୁଃଖର ଦୋହଦ ଭୁଲି ନିଜ ନିର୍ଜନରୁ ଆହୁରି ନିର୍ଜନ
ବ୍ୟକ୍ତିର କେନ୍ଦ୍ରକୁ ? ତେଣୁ ତୁମେ ଠିକ୍ କଲ
ଛିନ୍ନକରି ସବୁ ଫାଶଯାକ, ସଂପର୍କର ସବୁ ମାୟାଜାଲ,
ଏବଂ ଆପଣା ହାତେ ଟାଣିଦେଲ ଏକ ପୂର୍ଣ୍ଣଚ୍ଛେଦ,
ଜୀବନର ଜ୍ୟାମିତିକ ଛକେ, ଯାହା ନାନା ରେଖାରେ ଜଟିଳ ।
ପୋଛିଦେଲ ନିଜ ହାତେ ରଂଗୀନ ପ୍ରଚ୍ଛଦ
                    ଅଲିଖିତ ମିଳିତ ଗ୍ରଂଥର ।
ଥିଲା ଆମ ଅଦୃଷ୍ଟର ବହୁ ତାରିଖର
                    ଏକାଂତ ପୃଷ୍ଠା ଯା ।
ଏବଂ ବହୁ ସଂଭାବନା, ସ୍ମୃତିରେ ଭାସ୍ୱର,
                    ଏକ ନୂଆ ଦିନର ଦରଜା ।

ସେ ତ ନୁହେ ସ୍ମୃତିଲେଖା, ସେ ଯେପରି ଏକ ଦ୍ୱନଲିପି
ପ୍ରତି ପଦକ୍ଷେପ ଆଉ ପ୍ରତି ମୁହୂର୍ତ୍ତର
ଆମରି ସେ ବାଙ୍ମୟ ସଞ୍ଚାର ।
ପ୍ରଜ୍ଞାର ବିନ୍ଦୁରୁ ଯାହା ଜନ୍ମଲଭି
ହୃଦୟର ନୀଳ କେନ୍ଦ୍ର ସ୍ଥଳ
ସ୍ପର୍ଶକରେ ହିରଣ୍ୟ ଆନନ୍ଦେ, ଏବଂ ଏକ ମହାଜ୍ୱାଳନର
ରଚେ ସୂଚୀପତ୍ର ।
ସେ ଅଶ୍ୱରୀ, ବହୁଧା ବିଚିତ୍ର
ପଦକ୍ଷେପ ମୁହୁମୁହୁ କରେ ଜନ୍ମଲାଭ ।
ମୁହୁମୁହୁ ଲଭେ ରୂପାନ୍ତର ।
ମୁହୂର୍ତ୍ତରୁ ଜନ୍ମି ଯାହା ଛୁଏଁ ଏକ ଶତାବ୍ଦୀର ସ୍ତମ୍ଭ ।
ମୋର ନୀଳ ବ୍ୟକ୍ତିକରୁ ଛୁଏଁ ଯାହା ନୈର୍ବ୍ୟକ୍ତିକ ଅଙ୍କ ;
ମୋ' ଲୁହେ ଯା ଯୁକ୍ତିକରେ ଉପକୂଳ ଦୁଃଖର କୋଡ଼ାଙ୍କ ॥

ପ୍ରଜ୍ଞା ମୋର, ମୋ ଚିନ୍ମୟ ସତ୍ତା
ଜାଗିରହେ ଉଦାସୀନ ନିରାସକ୍ତ ବୈରାଗୀ ପରି ତା ।
ଆପଣା ଶୈଶିକ ଛନ୍ଦେ, ବିସ୍ମୟର ନିତ୍ୟ ନୂତନତା
ଛୁଇଁ ଯାକୁ ଛୁଏଁ ନାଇ, ମାତ୍ର ମୋର ଅଶାନ୍ତ ହୃଦୟ
ଚପଳ ଶିଶୁର ପରି ଡାକେ ଯାହା ଗୋଟିଏ ଚଳନ୍ତା
ଟ୍ରେନେ ହାତଠାରି, ଝାଙ୍ଗିପଡେ ଆଜି ଅସହାୟ ।
ଏକ ଭୟଙ୍କର ଦୁଃଖ ପଦହୀନ ସରୀସୃପ ପରି
ମୋତେ ଯେ ଅବଶ କରେ ମୋ ରକ୍ତରେ ନୀରବେ ସଂଚରି ।
ମନେହୁଏ ଲୋଡ଼ା ବୃଷ୍ଟି, ଶୀତାର୍ତ୍ତ ମନେ ବି ।
ଯହିଁରେ ମୋ' ରୁଦ୍ଧଶ୍ୱାସ ବୁଲୁବୁଲି ଦ୍ରବ
ଧୋଇ ଯିବ କେଉଁ ଏକ ଗାଙ୍ଗେୟ ଉପାନ୍ତେ,
ଏବଂ ଯାହା ଧୋଇ ନେବ ମୋର ସବୁ ବରଫର କ୍ଷତେ
କବୋଷ୍ଣ ଭୂଇଁକୁ କାହିଁ ।
ଏବଂ ମୋର ଶତ ଚକ୍ଷୁ ଦେଇ
ଝରିପଡେ଼ ଝରଝର ବର୍ଷାର ବନ୍ୟତା,
ଯାହାର ମୁଁ କରେ ଆବାହନ ଶୁଚିପୂତ ପ୍ରାଣେ
କୁଟଜ ଅର୍ଘ୍ୟରେ ।
ଯାହା ମୋ ଶୀତାର୍ତ୍ତ ପ୍ରାଣେ ଆଜି ଡାକିଆଣେ
ମୃତ୍ତୁର ଶୀତଳ ଛୁଆଁ, ଆଉ ତାର ତୀବ୍ର ମାଦକତା ॥

ତେଣୁ ମୁହିଁ କାଂଦେ କହିଁ କଇଁ
ନଷ୍ଟ ଉପକୂଳ ସଂଗେ, ସମସ୍ତ ହରାଇ ।
ଏକ ଅବଭକ୍ତ ଦୁଃଖେ, ନଡାର୍ଥକ ଏକଇ ବ୍ୟଥାରେ
ମୁଁ ଯେ ପୁଣି ଭାଂଗିପଡ଼େ, ଅର୍ଦ୍ଧଭଗ୍ନ ତରୁ ପରି
ଆପଣା ସତ୍ତାରେ ।
ତଥାପି ତ ଭଲଲାଗେ ମୋତେ କାଂଦିବାକୁ,
କହିଁ କଇଁ । ଉପକୂଳ ସାଥେ ।
କାଂଦିବାକୁ ବିମୌନ ରାତରେ,
ମଶାରିର ଫାଂକେ ଫାଂକେ
ଫୁଲ୍ ଫୁଲ୍ ତୀବ୍ର ଯଂତ୍ରଣାରେ,
ଏକ ଅହେତୁକ ଦୁଃଖେ
ଖାଲି ଅକାରଣେ ।
କାଂଦେ ଯେଉଁପରି ନକ୍ଷତ୍ର ବିତାନେ
ହାହାକାର ଅରଣ୍ୟର ବୁକୁ ।
ସମ୍ମୁଖେ ମୋ' ନିର୍ଜନତା ମୁହୁଁ ।
ସେଠି ଅଛୁ ମୋ ସ୍ଥିତିର ଦୁର୍ବହ କଂକାଳ ।
ଏବଂ ଏକ ଦରଭଂଗା ଦର୍ପଣର ଦେହ—
ଦେଖାଏ ଯା ସମସ୍ତ ଉଖାରି ।
ଖୋଲେ ଯା ସ୍ମୃତିର ମୋର ପ୍ରତିଟି ସ୍ତବକ,
ଛିନ୍ନଭିନ୍ନ ବ୍ୟବଚ୍ଛେଦ ପରେ, ସମସ୍ତ ଉଦ୍ଘାଟି ।
ଅସ୍ଥି, ମଜ୍ଜା, ଶିରା ସଂଗେ ପୁଚଶ୍ରୁତ ପଂକ ।
ତଥାପି ତ ଭଲ ଲାଗେ ଶୋଇ ଶୋଇ ନିଃଶବ୍ଦର ଅଂକେ
କାଂଦିବାକୁ କଇଁ କଇଁ ଭଗ୍ନ ସେତୁ ପରି,
ଭଂଗା ଉପକୂଳ ସାଂଗେ, ଏବଂ ମୋର ଧଫେଦ ମଶାରି
ବାଢ଼େ ବାଢ଼େ ରଖିଯିବା ଦୀର୍ଘଶ୍ୱାସ ଛୁପ ।
ଯାହା ତୁମ ସ୍ମୃତିର ପ୍ରଦୀପ—
ଶିଖା ସକରୁଣ ବାଷ୍ପ—
ଦୀର୍ଘତର କରେ ।
ଏବଂ ପୁଣି ଖୋଜିବାକୁ ସୃଷ୍ଟିର ମୁହୂର୍ତ୍ତେ
ଜୀବନର ଭଗ୍ନାଂଶରେ ।
ସ୍ୱପ୍ନର ଅକ୍ଷାଂଶ ଡେଇଁ
ତୀବ୍ର ଯଂତ୍ରଣାରେ ।।

—ନଭେମ୍ବର ୧୯୭୧



# ଶିକୁଳିଭଙ୍ଗାର ଗାନ

( ୧୯୭୦, ଏଂଗେଲସ୍ ଜନ୍ମବାର୍ଷିକୀ ଉପଲକ୍ଷେ )

ମଶାଲ୍ ଜାଳ, ମଶାଲ୍ ଜାଳ ଡାକଲ୍ଲ ଯିଏ —
ଲୋଡ଼ା ନାଇ ତେଲ, ମାଛର ଚର୍ବି ଲୋଡ଼ା ବି ନୁହେ ।
ମଣିଷର ତାଜା କଲଜା-ଚପୁଡ଼ା ଲହୁ ଓ ଲୁହେ
ସେ ଶିଖା ଜଳେ ।
ଚର ଦୁର୍ଦ୍ଦମ ରକ୍ତ କଦମ ଆଗକୁ ଗୃଲେ ।।

ମଶାଲ୍ ଜାଳ, ମଶାଲ୍ ଜାଳ ।
ମେହନତୀ ହାତ ହାତୁଡ଼ି ସମାନ ଜଳରେ ଜଳ ।
ଫୁଙ୍ଗୁଲା ବୁକୁ ଫଟା କାମିଜାର ତଳୁରେ ବାଜ,
ବାଜ ଦମ ଦମ
ଯେଉଁ ପର ଡ୍ରମ୍ ।
ଚଗ୍ ଫେଂଟଲୁମ୍
ତଳେ କୋଟି ପାଦ ବଢ଼ାଅ ଖୋଜ ।
ଫଟା କାମିଜାର ତଳୁ କୋଟି ବୁକୁ ବାଜରେ ବାଜ ।।

ମଶାଲ୍ ଜାଳ, ମଶାଲ୍ ଜାଳ ।
କୋଟି ମେହନତୀ ହାତ ଜାଳତଠେ
ଯେଉଁପର କୋଟି ହାତୁଡ଼ିମାଳ ।
ପ୍ୟାରି କମିଉନ୍
କାଂପା ମଉନ ?
ମଉନ ଲୁଭ୍ ପ୍ରଦର୍ଶଶାଳ । *
ହାତୁଡ଼ି ଜାଳ, ହାତୁଡ଼ି ଜାଳ ।।

---

* ଲୁଭ୍ = Loovre—ପ୍ୟାରି ନଗରର ବିଶ୍ୱବିଖ୍ୟାତ ଯାଦୁଘର

ଘୁଂଙ୍କ ଅଂକେ ବଢ଼େ ଯେତେ ଶୁନ୍,
ଧର୍ମ ଓ ମଠ ନାମେ ଯେତେ ଖୁଣ୍,
ଡାଉନ୍, ଡାଉନ୍, ଡାଉନ୍, ଡାଉନ୍ ।
ସରକାର ନାମେ ଯେତେ ଯା ଯୌନ
ଶୋଷଣ, ଇଜାରା, ଚୁରେ ଇନସାନ,
ଜାଳିବାକୁ ଗୃହେଁ, ଗ୍ରାମ ଓ ଟାଉନ୍
ଭାଂଗି ଶିକୁଳି,
ଜ୍ଳାଇ ଜାଲି ।
ମଶାଲ ଜାଲ, ମଶାଲ ଜାଲ ॥

ଯେତେ ଯା କାଏମ, ଇମାମ, ଇନାମ,
ହେଉ ସବୁ ଇତି, ହେଉ ତା ଖତମ ।
ଯେତେ ଏ ଫୌଜ, ବେପାରି ଓ ହୁନ୍
ଡାଉନ୍, ଡାଉନ୍, ଡାଉନ୍, ଡାଉନ୍, ।
ଶ୍ରମର ଜିଂଦାବାଦ ।
ନ୍ୟାୟର ଜିଂଦାବାଦ ।
ମଣିଷର ସ୍ୱର ଉଠେ ଶାଣଦାର
ନୂତନ ଇତେହାଦ ।
ବିପ୍ଳବ ଜିଂଦାବାଦ ॥

ସତ୍ୟ କାହିଁରେ କାହିଁ ?
ସତ୍ୟ ଲୁଚଚି ଶୋଷଣବାଦ୍‌ର ଅଂତପୁରାରେ ଯାଇ ।
ସତ୍ୟ ଲୁଚଚି କାନୁନବାଦର ବଡ଼ ପେଟ ତଳେ ତଳେ,
ସତ୍ୟ ଲୁଚଚି ମୁନାଫାଖୋରର ଯଉମୁଦ ଲଫାଫାରେ ।
ସତ୍ୟକୁ ଖୋଜି ଅମେ ହାଇରାଣ, ପତ୍ତା ଯେ ତାର ନାଇ ।
ସତ୍ୟ କାହିଁରେ କାହିଁ ??

ଆଜି ସତ୍ୟର ଭେଟ
ହେବ ହେବ ହେବ,ନିବାର ସତ୍ୟ ।
ଚକ୍‌ଚକ୍ ତଲୱାର
ପରି ଯେ ସତ୍ୟ ଆଜି ଜଳଉଠେ
ସୂର୍ଯ୍ୟର ହତିଆର ।

ସତ୍ୟର ହେବ ଜୟ ।
ବିପ୍ଳବ ବରାଭୟ ।
ଆଜି ତା ଜନ୍ମଦିନ ।
କୋଟି ମେହନତି ହାତ ଜଳି ଉଠ ।
କୋଟି ବିପ୍ଳବୀ ବୁକୁ ବାଜି ଉଠ ।
ଜଳାଅ ରୋଶନି ସଜା ଫୁଲଦାନି,
ଉଡ଼ାଅ ରୁମାଲମାନ ॥



—ମାର୍ଚ୍ଚ, ୧୯୭୨

# କଳ୍କି

(ଖଣ୍ଡକାବ୍ୟ)

## ଉତ୍ସର୍ଗ

। ଦେଶର ଅଭିଶପ୍ତ ସେହିବୁର୍ଜୋଆଙ୍କୁ···
ଏ ଖଣ୍ଡ କାବ୍ୟଟି ଉତ୍ସର୍ଗୀକୃତ ହେଲା ।

। ଲେଖକ ।

## ।। ଏକ ।।

ତୁମେ ଛାଡ଼ିଗଲେ ପ୍ରଭୁ ପୂଜା ନାଶ ଯିବ ।
ସୁବର୍ଣ୍ଣ ମଣ୍ଡପ ଗୋଟି ଅଶୋଭା ପାଇବ ।
ରତ୍ନ ସିଂହଦ୍ୱାରେ ପ୍ରଭୁ ନାଁ ଲାଗିଯିବ ।
ଛପନ ପଉଟି ଭୋଗ ଯିବା ମାତ୍ର ହେବ ।
ଅଠର ନଳାରୁ ହତାଶେ ଭକତେ
ଫେରିଯିବେ ପ୍ରଭୁ ସତେ ।
ପାଟରେ ସଜନ ବାହୁଲେ ତୁଲବ
ଯିବ ନାଇ କାହୁ ପ୍ରତେ ।
କଳ୍ପବୃକ୍ଷ ପରେ ଶାଗୁଣା ବସିବେ,
ବାଉଧି ଆସିବ ମାଡ଼ି,
କାହିଁଯିବ ପ୍ରଭୁ ଏ ଶଙ୍ଖ କଟକ
କହୁ କହୁ ଆଜି ଛାଡ଼ି !
ଜଣ୍ଡ୍ରୀ-ଦଣ୍ଡ ପଲଙ୍କ ଚେଜି କେ ନରେନ୍ଦ୍ର ରୂପେ ଯିବ ?

ଶରଧା ବାଲି ତ ନଉନ ହୋଇବ ନୀଳଚକ୍ର ନ ଦିଶିବ ।
ସିଂହଦୁଆରେ କଳା ଘୋଡ଼ା କଆଁ ସଜିଲେ ହୋଇଚ ଛୁଡ଼ା
ଉଠେ ବାର ହାତ ଖଂଡା ଝଟକି ଫେଇ ଶୀରପାଟ ମୋଡ଼ା ।
ଚଉଂଗ ଗଡ଼ୁ ଝାଡ଼ଖଂଡ ଯାଏ
ସବୁଠି ପଡ଼ିଚ ଖୋଜା
ଆସିବାର ବେଳ ହେଲଣି ଉଛୁର, ନଇଲେ କଳକି ରାଜା ।
ରୋଦଇ ପୃଥିବୀ ଅସହଣି ଭରା, ବେଳୁଁ ବେଳ ଅସଂଭାଳ,
ପୃଥ୍ୱୀକି କଏ ହୋଇବ କାରଣ ତୁଂଭ ବିନୁ ଏତେବେଳ ।
ଜଂବୁ ଦ୍ୱୀପରେ ଶୁଭୁଛୁ ଶବଦ କଲ୍‌କି ପ୍ରକଟ ହେବ ।
ଦୁଷ୍ଟ ନବାଶ ସଥେ ପାଳିବେ, ପୃଥୀ ମଟାଳ ହେବ ।
ଘୋର କଳିକାଳ ହୋଇଲା ପ୍ରବଳ, ସୃଷ୍ଟି ହୋଇବ ନାଶ ।
ଛଢଆ ବଟରେ ହେବ ବାର ହାତ ଖଂଡାର ପରକାଶ ।
ଜଳୌକା ମାଳେ ଉଆଁସ ରାତିରେ ଶୁଣାସିବ କାଳ ରଡ଼ି
ଭୈରବୀ ଡାକ ଶୁଭିବ ଯାହାକୁ ପ୍ରାଣବାୟୁ ଯିବ ଉଡ଼ି ।
ଉଠିବେ ଯୋଗିନୀ, କାଂତାନୀ, ଚଂଡୀ କଳକଳା ରବ ଛାଡ଼ି,
ମଣିଷର କଂଚା ମାଉଁସ ଖାଇବେ ଉପାଡ଼ି ଅଂତନାଡ଼ୀ ।
ଉଭା ହେବେ ଦେବୀ ଧରି ନାନା ରୂପ, ଉଗ୍ରତାରା, ଭଇରବୀ
ଛିନ୍ନମସ୍ତା, ବଗଳାମୁଖୀ ଯେ ମାତଂଗୀ, ବନଦେବୀ ।
ମନ ଓ ପରମ ହୋଇଣ ବିଭୂର
କହଂତ ଯିବା ଗୃଲ ।
ଆସିଲେଣି ଖଂଟ ଡାଢ଼ିବେ କବାଟ,
ପଳାଇବା ଘରୁ ଭଲ ॥

## ॥ ଦୁଇ ॥

ତେଣେ ଶୁଣାଯାଏ କଂକ୍ରଟ କଂଠେ
ଘୋର ଦୁର୍ଜ୍ୟୁ ନାଦ
'ଆସିଚ ସମୟ । ଛୁଂଡା ଶିକୁଳି ।
ଭାଂଗ ଏ ବୁନିଆଦ ।
ଭାଂଗ ଭାଂଗ କାରା ।
ଟେକି ଧର ଆଜ ନିଶାଣ ପତିକା
ଉଚ୍ଚ ତୋ' ପଡ଼ିଆରା ।'
। ପ ର ଶେଯରେ ଜାଗି ଉଠେ ତେଣେ
ଅନଂତ ନାରାୟଣ,

କ୍ଷୀର-ସମୁଦ୍ର ଢେଉରେ ଚହଲେ
ମଣିଷର ଭାଙ୍ଗା ଖୁଣ୍ଟ୍ ।
ଆକାଶ-ଛୁଆଁ ଏ ସୌଧ ମହଲେ
ଲାଗେ ରକ୍ତର ଛିଟା ।
ମଣିଷର ଲହୁ ଧୋଇ ଦିଏ ସାରା
କୁବେରର ସହରଟା ।
ରକ୍ତରେ ଲାଲ ଦୌଲତଖାନା
ପୁଣି ତୋଷଖାନାମାନ,
କାଏମୀ ସ୍ୱାର୍ଥ ବୁକୁରେ ଝୁଲୁଛି
ଖତମର ଖତିଆନ ।
ସେଦିନ ଯାହା ଥିଲା ଅତିବାସ୍ତବ,
ଅତିବ୍ୟକ୍ତିକ ଛକ,
ସବୁଠି ଛୁଟିକି ପଡ଼େ ବାରୁଦର
ହଠାତ୍ ଚନ୍ଦ୍ରାଲୋକ ।
ଦି'ଖଣ୍ଡ ହୁଏ ନିଜ ଦର୍ପଣ
ନିଜର ପ୍ରତିମା ସହ
ଆପଣା ଦ୍ୱନ୍ଦ୍ୱେ ଭାଙ୍ଗି ପଡ଼ଇ
ବ୍ୟକ୍ତିର ସମାରୋହ ।
ଏକଇ ବିସ୍ଫୋରଣ
ଦୂରକୁ କରଇ ନିକଟ ଏବଂ ନିକଟକୁ ବହୁ ଦୂର ।
ଯା ଥିଲା ଏକକ ନିଭୃତଲୋକ
ଅବା ଆତ୍ମନେପଦୀ,
ଆଲୋକିତ ହୁଏ ଦୂରତା ହରାଏ,
ହୁଏ ଉଚ୍ଛଳ ନଦୀ ।
(ନ ରହି ନିଜର 'ଖାସ କାମରା'ରେ ଆଗଭଳି ଆଉ ବନ୍ଦୀ ।)
ସବୁଠି ନିଆଁର ହୁଲ ।
ସବୁଠି ଯେ ବିଷ, ବିଷର ଘୋଷଣା,
ସବୁଜ ବିଷର ଫୁଲ ।
କେତେ ସଜାଡ଼ିବୁଁ କେତେ ବା ଫିଙ୍ଗିବୁଁ
ଜାଣୁଁନା ତ ଫୁଲଦାନୀ,
ଜାଣୁଁନା ଗଢ଼ିବୁଁ ଅଥବା ଭାଙ୍ଗିବୁଁ
ସ୍ୱପ୍ନର ରାଜଧାନୀ ।
ମଣିଷର ଭୁଲ ଚିନ୍ତା ଉପରେ ହୋଇଅଛି ଯାହା ଠିଆ

ମଣିଷର ଭୁଲ ଅର୍ଥ ଯାହାକୁ କରିଥିଲା ପରକାୟା ।
ଗୃହିଆଡ଼େ ବ୍ୟଷ, ଗୃହିଆଡ଼େ ଖାଲି ନଆଁ ॥

କିଏ ଏଥିପାଇଁ ଦାୟୀ ??
କହ କହ ସବୁ ବଙ୍କ ପୋଥାଳ, ଚର୍ବି-ଚଟୁଳ ମୁହଁ,
ଶାସ୍ତ୍ରର ଅନୁଧ୍ୟାୟୀ !
(ତୁମେ ନା ମୁଁ ନା ସେମାନେ ନା କେଉଁ ମଂଗଳଗ୍ରହବାସୀ ।
ସହସ୍ର ପୋଥିର ଯେତେକ ପଂଡ଼ା, ଯେତେ ସଂସଦୀ ନେତା,
ସାଇବ-ବିବି ଓ ଗୋଲମଖାନାର ଯେତେକ ଅଂତେବାସୀ
(ଆଉ ଯେତେ ପ୍ରବାସୀ)
କହ କହ ଯେତେ ନୌକର ଆଉ ଯେତେ ନମ୍ବରଧାରୀ !
ଚଳଂତି ପ୍ରଥାର କିଂକର ଗଣ, ଯେତେ ଅଛ ଶବବାହୀ
ଚଳନ୍ତି ମାପ ଓ ଓଜନର ଯେତେ ଅମୀନ୍, ଇଜାରଦାର,
ଯେତେ ଯେତେ ଅଛ କବର-ଖୋଳାଳୀ, ଯେତେ ମଡ଼ା ଜଗୁଆଳ
ଆଉ ନାମାବଳୀ ଧାରୀ,
କହ ସହସ୍ରଆ ବାଟର ବାଟୋଇ, ଅଉ ଭୂତକୋଦାଳୀ
କହ କହ ସତ କରି
(ଧର୍ମକୁ ସାକ୍ଷୀ କରି)
ଏକ ସଭ୍ୟତା ଶୁକ୍ରକୀଟରୁ ଜନ୍ମ ହୋଇ ଯେମାନେ
ଚିରକାଳ ହେଲେ ଜାରଜ ବଂଶେ
ତୁମରି ସିଂହାସନେ······।
ସବୁଠାରୁ ବଳି ସମ୍ଭ୍ରଙ୍କ ଘରେ ଶତକର କୋଳେ ବଢ଼ି,
ଚନ୍ଦ୍ର ବିଜୟୀ ମଣିଷର ଶିଶୁ
ହେଲା ଯିଏ ବେଓ୍ୱାରିସ୍,
ବେକାର, ଦଖଲହୀନ,
ସେ ଯଦି ନ ବୁଝେ, 'ସ୍ଥିତିର' ଅର୍ଥ,
କହେ ନାଇ ସେ ସାଲିସ,
ମାନେ ନାଇ 'ସ୍ଥିତିବାନ' ।
ନୁହେ କି ଧର୍ମଛଡ଼ା !
ଗଢ଼ ଯେତେ ପାର ତା ପାଇଁ ଆଇନ,
ଶାସ୍ତ୍ରର କାଠଗଡ଼ା ।
ପଥ ତା'ର ମୁକାବିଲା ।
ସଂଗ୍ରାମ ତା'ର ବଂଚିବାର ଯେ ଏଂଇ ରାସ୍ତା ଖୋଲା ।
ଧର୍ମ ତାହାର ଖତମ କରିବା

ଯାହା ଅଛି,
ଯାହା ଥିଲି—॥

॥ ତିନି ॥

ତମ ସଂସଦୀ ଚକ୍ରପଟ୍ଟର ପରିଚିତ ଚେହେରାଟା
ନୋହୁଁ ବିସ୍ମୃତ ଜମା ।
ଭଂଗା କାଂଥରେ ଚୂନଲିପା ତମ ମୂର୍ଖର ଶେଷକଥା ।
ଲାଭ କରେ ଯାହା ହାଂକଡ଼ାଂକଠୁ କରତାଳି ଅବହେଳେ,
ଅଯାଚିତ ଶିରୋନାମା ।
ତମ ଗାର୍ହସ୍ଥ୍ୟ, ଦଖଲି ସ୍ୱତ୍ୱ, କାଏମୀ ତତ୍ତ୍ୱ,
ଯାବତ ଧର୍ମଖୋର,
ନିପଟ ଯୌନଗ୍ରେହ ।
(ଚିରକାଳ ତାହା ନାରୀଙ୍କୁ ରଖିଚି "ପିଲାଂକ ମାଆ" କରି
ମୌରସି ପଞ୍ଜା ପରି)
ରଖି ପୁଣି ବହୁ ଫାଂକ
ସୁବିଧାଜନକ ସ୍ଥଳେ ।
ମଣିଷର ମୁକ୍ତ ସଂପର୍କେ ଯା ଖୁଣ କରେ ସବୁବେଳେ
ଧର୍ମଲୁ ଆଖିଠାର ।
ନିଜେ ହୋଇ ବେଶ୍ 'ସହଜ', ଚକ୍କଣ ଧର୍ମାନ୍ଧ ଗ୍ରାସଘରେ,
ନିଜେ ହୋଇ ବେଶ୍ ସ୍ୱାଧୀନ, ଫର୍ଗ୍ କ୍ଳବ ଓ ଦପ୍ତରେ
ସମାଜକୁ ଗୃହେଁ ବାଂଧି ରଖିବ ସଂଯମ ଶୃଂଖଳେ
କାଠଗୋଲି ପରି ନାଚରଇ ବେଢା-ଜାଲେ ।
ତମ ବ୍ୟଭିଚାରି ଦ୍ୱୈତ ମୁହଁର ଭେଜାଲ-ଧର୍ମବାଣୀ
ସୃଷ୍ଟି କରୁଚି ବହୁତ ଦ୍ୱନ୍ଦ୍ୱ, ଦ୍ୱିଧା ଓ ପ୍ରଶ୍ନବାଚୀ,
ରାସ୍‌ପୁଟିନ୍‌ର ଗେରୁଆ କୁର୍ତା ଶରୀଆଡ଼େ ଯା ଝୁଲୁଚି
ତାକୁ ପୋଡ଼ି ଦେଇ ତରୁଣ ଗୃହଁଚ ଠିଆ ହେବ ଥରେ ପୁଣି,
ସ୍ୱଚ୍ଛ ଆକାଶ ତଳେ
ନିଜର ଶୁଭ୍ର, ଶୁଚିତା, ଆଉ ତା' ନଗ୍ନ ବସ୍ତୁତରେ ।
ଏଥିପାଇଁ ତମ କଲିଜା କାହିଁକି ପନି ପଶିକା ଥରେ !!

ତମର ଜୈବ ପଣ,
ତମ ସାରିତ୍ୱ ଗୁଣ,
ଲଂବା ଭାଷଣମାନ

ଏବଂ ତମର ନାଚ ଗାନ ଗୀତ
ଏକାଧାରେ ଯାହା ରୁଦ୍ର-ଲଳିତ,
ରୁକ୍ଷ-ମଧୁର, କ୍ଳାଂତ-କୋମଳ, ବୃହନ୍ନଳାର ସ୍ୱର ।
ସତେ କି ଚମତ୍କାର !
ସ୍କୁଲ୍-ଫାଂକିଦିଆ ପିଲାଂକର ଯା ହୋଇପାରେ ଉପକଥା ।
ଏବଂ ବେକାର ଯୁବତୀମାନଂକ ଗାଥା ।
କଂଚୁକ୍ଷୀମାନେ ଯା' ପାଇଁ ଦିଅଂତି ଦୁଲଦୁଲି, ଫୁଲ୍‌ମାଳ । *
ଶେଷରେ ତମର ମୃଦୁ-ମୌସୁମୀ ଆଖି,
କଥାକେ କଥାକେ ଆର୍ଦ୍ର ହେବାର ସାକ୍ଷୀ ।
ଏବଂ ତମର ମଧ୍ୟବିତ୍ତର
ଚପଳ-ନରମ ମନ
ସତେ କି ରୋମାଂଟିକ୍ !
ତା' ସଂଗେ ତମର
ସେଇଟି ବୁରୁକୋଷ୍ଠା ବୁକୁ,
ଟିକିକ କଥାରେ ହୁଏ ଯାହା ଦୁକୁଦୁକୁ ।
କ୍ରୋଧେ ହୁଏ ଲାଲ, କ୍ଷମାରେ ଶୀତଳ,
ପ୍ରେମେ ବନେ ପଥଯାସ ।
କବୋଷ୍ଣ ଜଳେ ହଂସ ପରି ଯା'
ଭଲପାଏ ଖେଳିବାକୁ ।
ସେଥେ ଅଛି ନାନା ତତ୍ତ୍ୱର ପୁଟ,
ଧୂର୍ତ୍ତ-ଧୂମଳ କଥା-ଅମୃତ ।
ଉଦ୍‌ଗାରେ ଯାହା ଚିମ୍‌ନୀ ସମାନ
'ଗୃର୍‌ମିନାରଆ' ଓଠ ।
ଅଛି ଅଛି ସବୁ ଜଣା
ଆଂଗୁଠି ଅଗେ ଗଣା ।
ଏବଂ ତମର ଭାନୁମତୀର ପେଡ଼ି ।
ଥିବାକୁ ଯା' କରେ ନ ଥିବା କ୍ଷଣକେ
ନ ଥିବାରୁ ଥିବା କାଢ଼ି ॥

କହ ଏକ ସିଧା କଥା ।
ଭାଂଗିଲି କିଏ ବଂଧ ?

---

* କଂଚୁକ୍ଷୀ = ମାଇଚିଆ

କିଏ ସେ ଆଣିଲା ବନ୍ୟା ?
କିଏ ସରଜିଲା କୋଟି ପଂଜରେ
ଝଂଜା କୁଳିଶ-ଧନ୍ୟା ?
ବନାଇଲା ଖୁଣି ମୈତ୍ରୀ କରୁଣା ଦେଶର
ଏ ପୁଣ୍ୟ କନ୍ୟା ?
ଯଦି ଆସେ ବଢ଼ି ଆଉ ନିଏ ଭାଙ୍ଗି
ଲକ୍ଷ ଜୀବନ-ଛଂଦ,
ବସ୍ତ୍ର ମଇଳା ଓ ଆବର୍ଜନାର ସାଥେ—
ଧୋଇଯାଏ ଯଦି ଭଲ କିଛି ମୂଲପୋଛି,
କିଏ ସେ ରୋକିବ ?
ରୋକି କି ପାରିବ ତୁମର ଶାସ୍ତ୍ର, ଆଇନର ମାରପେଂଚ ?
ବନ୍ୟା ସ୍ରୋତକୁ ବାଅଂକ ଗୁଣ ତୁମ ଛଡା କିଏ ଦେବ ?
କିଏ ତରୁଣର ବିଶ୍ୱାସେ କହ
ମିଶାଇଲା ଏଠି ବିଷ ?
ଲିଖିଲା ତାର ଆଶାର ପରିଧି, ସ୍ୱପ୍ନର ନୀଳଚକ୍ର ?
ପରିଣତ କଲା କିଏ ପରିହାସେ ମଣିଷର ଇତିହାସ ?
କାଳର ପ୍ରତିମା ଉଜାଡ଼ିଲା କିଏ କହ ?
'ଗଣତଂତ୍ର'କୁ ସାମିଲ କଲା କେ ବଜାରର ଚିଜ ସହ ?
ବସିବାକୁ ଚୁଙ୍ଗି ସେଥିରେ, ଢାଳୁଚ ଏତେ କୁଂଭୀର-ଲୁହ !
ସମ୍ପଦୀ ରାଜନୀତିକୁ କରିଚ କିଣାବିକାରଇ ହାଟ,
ବଂଶଧରଂକୁ ଦେଖାଇଚ ଖାଲି ଚଇତି ଘୋଡ଼ାର ନାଟ ।
ଆଜି ସେ ଟ୍ରୋଜାନ୍ କାଠର ଘୋଡ଼ାଟା ହେବାରୁ ଜଖମ କିଆଁ *
ହୁଅ ଏତେ ଛଟପଟ ! !
ଚେତା ପଶେ ଏତେ ଦିନେ !
ଏତେ କାଳ ତୁମେ ଶୋଇଥିଲ କେଉଁ ଅନ୍ତରର ଉପବନେ !
ତୁମେଇ ଜାଳିଚ ତରୁଣ ବୁକୁରେ
ହିଂସାର ନିଆଁ ହୁଳା ।
ଯୋଗାଇଚ ତେଲ, ଆହୁରି ଅଗ୍ନି କଣା ।
ତୁମେଇ କରିଚ ଶାଣିତ ତାହାର
ପବିତ୍ରତମ ଶିଖା ।

---

* ଟ୍ରୋଜାନ୍ ଘୋଡ଼ା = ହୋମରଂକ ମହାକାବ୍ୟରେ ବର୍ଣ୍ଣିତ ଟ୍ରୋଜାନ୍ ଯୁଦ୍ଧରେ ବ୍ୟବହୃତ କାଠର ଘୋଡ଼ା ଯାହା ଟ୍ରୋଜାନ୍ ହର୍ସ ନାମରେ ଖ୍ୟାତ ।

ଶିଖାଇଛ ତାକୁ ହତ୍ୟାର ଗୁରୁକଳା ।
ତୁମେଇ ଦେଇଛ ବୋମା ବଂଧୁକ
ହାତରେ ତାହାର ଟେକି,
ଚୂରିବାକୁ ତମ ତୁଠା ଫଂଠା ଇମାରତ ।
ପାଲଟି ଯାଇଛ ସେ ତ ହିଂସାର ଅସ୍ତ୍ର
ଗଢ଼ିବାକୁ ପୁଣି ନୂଆ ମସ୍‌ନଦ ଏକ ।
ନ ହୋଇ ସେ କ୍ଳୀବ ମୂକ ଦର୍ଶକ
ଉଠାଇଛ ହତିଆର ।
ହତିଆର ଦେବ ମଣିଷର ମାନ,
ନୁହେଁ ପେଟର ଥାଳ ॥
ତୁମେଇ ତରୁଣେ ଦେଇଅଛ ଠେଲି
ହିପ୍‌ପୀର କଲୋନୀକୁ,
ନିଜ ଦୋଷ ଢାଂକିବାକୁ ।
କରିଛ ତାହାକୁ ଉପଦଂଶର କୀଟ
ଗୃପିବାକୁ ତମ କ୍ଷତ ।
କରିଛ ତାହାକୁ ଚରସ, ଏସିଡ୍,
ମାଦକ ବଟିର ପୋକ ।
ଭୁଲିବା ପାଇଁକି ଶୋକ ।
ତୁମେଇ ଦେଇଛ ତାକୁ ଜାଣିଶୁଣି ତତ୍ତ୍ୱ
ଅନ୍ୟାୟ ଆଉ ବ୍ୟଭିଚାରର ମୋଡ଼େ,
ନିଜ ଖଂଡିତ ପ୍ରତିମା ଖୋଜେ ସେ
ଫୁଟ୍‌ପାଥର କଡ଼େ,
ବିଜ୍ଞ ସମ ଜ ଦେଇଛ ଯାହାକୁ କାଢ଼ି
ନର୍ଦ୍ଦମା-ଅଭିସାରେ ॥

ଭାବିଅଛ ତୁମେ ଏକେଲାଇ ଭଲଲୋକ,
ଆଉ ସମସ୍ତେ ଖରାପ, ଇତର ଜନ,
ଅମୃତର କି ତୁମେ ଏକା ସଂତାନ
ଆଉ ଯେ ରହିଲେ ସଭିଏଁ ତ ବୁଦ୍‌ବୁଦ ।
ମଣିଷ ଲହୁରେ ଚଢ଼ି ଦ' ଗୃରଟା ଗାଡ଼ି
ଭାବିଛ କି ଶୁଭ୍ର କୋଠରେ ଯିବ ଉଡ଼ି,
କଲ୍‌କି ଆସିବ ଆଉ ଫେରିଯିବ,
ମୂଲ୍ୟକାଉ ଆଶା ଛାଡ଼ !
ଧ୍ୱଂସର ହାତ ଦେବ ଦେବ ତୁମେ ଏଡ଼ି !

କଲ୍କିର ଖଂଡା ତୁମକୁ କି ଦେବ ଛାଡ଼ି ?
ଭୀରୁ ଓଟପକ୍ଷୀ ବାଲି ତଳେ ରଖି
ମଥା ପାରେ ଝଡ଼େ ଏଡ଼ି ?
କଲ୍କି ଆସୁଛି କାଳିଆ ଘୋଡ଼ାରେ ଚଢ଼ି,
ରକ୍ତ-ତୋଫାନ ପରି ।
ମରିବାର ଯାହା ନିଶ୍ଚେ ମରିବ,
ନିଶ୍ଚେ ପଡ଼ିବ ଝଁଡ଼ି ।
ତୃଣି ତୋଫାନେ ଶୁଖିଲି ପତ୍ର ଭଳି ।
କଲ୍କି ଆସୁଚି ବାରୁଦର ମେଘେ
ନୂଆ ମହ୍ଲାର ତୋଳି ।
କଂକ୍ରିଟ୍‌ସେନା ଦଅ ଦଅ ବାଟ ଗୁଡି ।।

—ଅକ୍ଟୋବର, ୧୯୭୧



# ପିଂଜରା

ପିଂଜରାର ବୁଲବୁଲ !
ତୁମେ ଗାଅ,
ତୁମେ ଗାଅ ସ୍ରଷ୍ଟାର ସଂଗୀତ ।
ଯେ ସ୍ରଷ୍ଟାରେ
ମଣିଷର ଗୃହାଣୀର ତଳେ
ରହିଥାଏ ଆଉ ଏକ ଗୃହାଣୀର ସର୍ତ୍ତ—
(ଏବଂ ପ୍ରତି ଶବ୍ଦ ତଳେ ଆଉ ଏକ ଶବ୍ଦର ଅର୍ଥ )
ଗଢିବାକୁ ଅଦୃଶ୍ୟ ପିଂଜରା
ବ୍ୟାପ୍ତି ଯାର ବାଗଂଡାରୁ ସ୍ରଷ୍ଟାଯାଏ ।
ପୁଣି ସ୍ରଷ୍ଟାଠାରୁ ବାଗଂଡା ପର୍ଯ୍ୟଂତ ।
ଯାହା ନାଦ ଅନାଦ ଶୂନ୍ୟରୁ ॥

—ଡିସେମ୍ବର, ୧୯୭୧



# ସ୍ୱାହସ୍ୱା ଖାଁ

ମୁଁ ଏକ ସ୍ୱାହସ୍ୱା ଖାଁ । ଘୂର୍ଣ୍ଣିପାକ ଷଷ୍ଠିପୂର୍ତ୍ତି ପରେ
ଆସିଛ ମୁଁ, ଶୀତବସ୍ତ୍ର ଫିଙ୍ଗିଦେଇ କଂଢେଇଙ୍କ ଘରେ
ଭାଂଗିବାକୁ ଖେଳଣା ସମସ୍ତ, ଏବଂ ପୁଣି ଦେବାପାଇଁ ଯୋଡ଼ି
ଫାଟା ଅଯୋଡ଼ା ଷଟେ ମୁହୂର୍ତ୍ତକେ, ତୀକ୍ଷଣ ହସ୍ତାକ୍ଷରେ ।
ନିଖୋଜ କିଣ୍ଟାର ମୋଡ଼େ, ଗୋପନ ସିଡ଼ିରେ
ଜନ୍ମାଂତରେ, ଯା ଭିତରେ ଯୁଗ ଯୁଗ ଥିଲା ତାଲା ପଡ଼ି
ନାସ୍ତୁ ଭୟଂକର ସତ୍ୟ, ବହୁ ମୁହଁ, ଯାହା ପଚି ସଢ଼ି
ତଥାପି ଉଜ୍ୱଳ । ମୁଁ ଆସିଛି ଧାଡ଼ିବଂଧା ସଂଖ୍ୟାର ସହିତରେ
ଅଛି ଯେଉଁଠାରେ ବହୁତ ଜମାଟ ବଂଧା କଂକାଳର ସ୍ତୂପ,
ଆଶ୍ଚର୍ଯ୍ୟ ଶବ୍ଦର ମେଳ ଏବଂ ଏକ ଭାଷାର ଭଗ୍ନାଂଶ ।
ଅଚିହ୍ନା ନାରୀର ଶବ, ଭିନ୍‌ଦେଶୀ କବଂଧର ରୂପ ।
ଏବଂ ବହୁ ଛିଂଡ଼ା ମାନଚିତ୍ର, ଦେଶ ମଧ୍ୟେ ଅଦ୍ଭୁତ ବିଦେଶ ।
ଏବଂ ପୁଣି ସ୍ୱପ୍ନ ସୀମାଂତ ପାରେ ଅପରୂପ ଏକ ମହାଦେଶ ।
ସେଇ ଜାଗାର ଭଂଗାରୁଜା ଆଇନାରେ ଦେଖେ ବହୁ ମୁହଁ
ମାଂନଣାର ସ୍ୱପ୍ନଳିପି, ଫେରିଆଇ ଆଶାର ସ୍ୱର, ଏବଂ ଭଂଗା ପ୍ରତିମା ସମୂହ
ଯାହା ସବୁ ଦିନେ ଥିଲା ସତ୍ୟ, ଅଜି କିଂତୁ ହୋଇଛି ଯା ଧ୍ୱଂସ ॥
ମୁଁ ଏକ ସ୍ୱାହସ୍ୱା ଖାଁ, ମୁଁ ଆସିଛି ମୋ ମଧୁ ବାହାର ।
ମୁଁ ହୋଇଛି ନଜର ଶିକାର । ନଜେ ପୁଣି ସାଜିଛି ଶିକାରୀ
ଅଦ୍ଭୁତ ଇଚ୍ଛାର, ଏବଂ ତୃଣି ବନିଛି ପ୍ରହରୀ
ଲଭଂତା ସୀମାର, ହଜିଛି ଯା ବିଭିନ୍ନ ଜଟିଳ
ରେଖାର ଆକୃତି ମଧ୍ୟେ, ହଜାଇଛି ସଂଜ୍ଞା ପୁଣି ତାର
ଅବୋଧ ଶବ୍ଦର ମଧ୍ୟେ, ସମୁଦ୍ର-ସଂଗମେ ହୋଇ ଲୀନ ।
ସବୁ ଲିଭିଯାଏ, ଜମିଯାଏ ! ପୁଣି ବଢ଼ି ଉଠେ
ଲଭି ଏକ ନୂଆ ଆୟତନ ॥
ମୁଁ ଏକ ସ୍ୱାହସ୍ୱା ଖାଁ, ନୁହେଁ ଏକ ନୀରବ ଦେଖାଳୀ ।
ମୁଁ ତା ହେଲେ କ'ଣ କରେ ? ମୁଁ କି ଏକ କବର ଖୋଳାଳୀ ?
ହାତ ମୋର ରକ୍ତେ ଲାଲ, ମୁଁ ଖୁଣୀ ? ମୁଁ ଧର୍ଷଣକାରୀ ?

# ସ୍ୱାହସ୍ୱା ଖାଁ

ମୁଁ ଏକ ସ୍ୱାହସ୍ୱା ଖାଁ । ଘୂର୍ଣ୍ଣିପାକ ଷଷ୍ଠିପୂର୍ତ୍ତି ପରେ
ଆସିଛି ମୁଁ, ଶୀତବସ୍ତ୍ର ଫିଙ୍ଗିଦେଇ କଂଢେଇଙ୍କ ଘରେ
ଭାଂଗିବାକୁ ଖେଳଣା ସମସ୍ତ, ଏବଂ ପୁଣି ଦେବାପାଇଁ ଯୋଡ଼ି
ଦୁଇଟା ଅଯୋଡ଼ା ଖଣ୍ଡେ ମୁହୂର୍ତ୍ତକେ, ଶାଷଣ ହସ୍ତାକ୍ଷରେ ।
ମୁଁ ଆସିଛି ନିର୍ଖୋଜ ଇଚ୍ଛାର ମୋଡ଼େ, ଗୋପନ ସିଡ଼ିରେ
କକ୍ଷାନ୍ତରେ, ଯା ଭିତରେ ଯୁଗ ଯୁଗ ଥିଲା ତାଲା ପଡ଼ି
ବହୁ ଭୟଂକର ସତ୍ୟ, ବହୁ ମୁହଁ, ଯାହା ପଚି ସଢ଼ି
ତଥାପି ହଜିଲ । ମୁଁ ଆସିଛି ଧାଡ଼ିବନ୍ଧା ସଂଖ୍ୟାର ସହରେ
ଅଛି ଫେଲିଂଟାରେ ବହୁତ ଜମାଟ ବନ୍ଧା କଂକାଳର ସ୍ତୂପ,
ଅସ୍ଥି ଶବ୍ଦର ମେଳ ଏବଂ ଏକ ଭାଷାର ଭଗ୍ନାଂଶ ।
ଅଚିହ୍ନା ନାଙ୍କର ଶବ, ଭିନ୍‌ଦେଶୀ କବନ୍ଧର ରୂପ ।
ଏବଂ ବନ୍ଦ କୁଣ୍ଡା ମାନଚିତ୍ର, ଦେଶ ମଧ୍ୟେ ଅଦ୍ଭୁତ ବିଦେଶ ।
ଏବଂ ପୁଣି ଦୟନୀୟ ସୀମାନ୍ତ ପାରେ ଅପରୂପ ଏକ ମହାଦେଶ ।
ସେ ଘରର ଭଂଗାରୁଜା ଅଇନାରେ ଦେଖେ ବହୁ ମୁହଁ
ସଂସ୍କାରର ପ୍ରତିଲିପି, ଫେରାଇ ଆଣାର ସ୍ୱର, ଏବଂ ଭଂଗା ପ୍ରତିମା ସମୂହ
ଯାହା ସବୁ ଦିନେ ଥିଲା ସତ୍ୟ, ଆଜି କିନ୍ତୁ ହୋଇଛି ଯା ଧ୍ୱଂସ ।।
ମୁଁ ଏକ ସ୍ୱାହସ୍ୱା ଖାଁ, ମୁଁ ଆସିଛି ମୋ ମଧ୍ୟ ବାହାର ।
ମୁଁ ହୋଇଛି ନିଜର ଶିକାର । ନିଜେ ପୁଣି ସାଜିଛି ଶିକାରୀ
ଅଦ୍ଭୁତ ଇଚ୍ଛାର, ଏବଂ ବୁଣି ଦିଏଛି ପ୍ରହରୀ
ଲଂଘିତା ସୀମାର, ହେଉଛି ଯା ବିଚ୍ଛିନ୍ନ ଜଟିଳ
ରେଖାର ଅଦ୍ଭୁତ ମଧ୍ୟେ, ହଜାଇଛି ସଂଜ୍ଞା ପୁଣି ତାର
ଅବୋଧ ଶବ୍ଦର ମଧ୍ୟେ, ସମୁଦ୍ର-ସଂଗମେ ହୋଇ ଲୀନ ।
ସବୁ କିଛି ଲିଭିଯାଏ, କମିଯାଏ । ପୁଣି ବଢ଼ି ଉଠେ
ଲଭି ଏକ ନୂଆ ଆୟତନ ।।
ମୁଁ ଏକ ସ୍ୱାହସ୍ୱା ଖାଁ, ତୁମେ ଏକ ନୀରବ ଦେଖାଳି ।
ମୁଁ ତା ହେଲେ କ'ଣ କରେ ? ମୁଁ କି ଏକ କବର ଖୋଳାଳି ?
ଆଜି ମୋର ଚକ୍ଷୁ ଲାଲ, ମୁଁ ଖୁଣୀ ? ମୁଁ ଧର୍ଷଣକାରୀ ?

# ପ୍ରଶ୍ନ

ପ୍ରଶ୍ନ ମୋର ଆଜି ହୋଇ ଏକ ପଗ୍ମୁରିବା
 ମିଳେ ନାଇ ଯାହାର ଉତ୍ତର ।
ରାତ୍ରିର ମୌନତା ପରି ଢାଂକିଦିଏ ଯାହା
 ସ୍ୱରବର୍ଣ୍ଣମାନ ନକ୍ଷତ୍ରର ।
ଯେଉଁ ପ୍ରଶ୍ନ ତଳେ ଥାଏ ଆଉ ଏକ ପ୍ରଶ୍ନ
 ଢାଂକି ହୋଇ ଚିର ନିରୁତ୍ତର ॥

ସବୁ ପ୍ରଶ୍ନ ହେଉ ମୋର ଗୋଟିଏ ରାହାଣୀ
 କାହାଣୀର ପରମାଣୁ ଧଣ
ଉଭାହୁଏ ଯାହା ଆସି ଜୀବନର ମୋଡ଼େ
ଯତେ କେଉଁ ଉପକଥା ପରି ।
ଛିନ୍ନ ହୋଇପାରେ ସବୁ ଯୋଗ-ସୂତ୍ର,
 ଶବ୍ଦ, ରେଖା, ଲେଖା ବା ଦେଖାର,
ମାତ୍ର ଯାହା ରହିପାରେ ଏ ସବୁରୁ ବର୍ତ୍ତି
ତାହା ଚିର ନ ପାଇବା ଯାହା ପାଇବାର
 ଅନ୍ୟ ଏକ ନାମ ।
ଅନ୍ତିବର ମଧ୍ୟେ ଯାହା ଏକାଂତ ନିଜସ୍ୱ
ପୁଣି ଯାହା ସମସ୍ତ ଅନାମ
 ମଧ୍ୟେ ଜଣେ କେ ବିଶେଷ ॥

—ଡ଼ିସେମ୍ବର, ୧୯୭୦



ଘୋଡାଙ୍କ ଲୁହର ଦାଗ, ହଉଚ ମୁଁ କଣ ବନ୍ଧୁ ନାଗ ?
ଜନ୍ମର ଅସ୍ତ୍ର ବାଜ ଅସମ୍ମତ ଦେହେ ? କିଂତୁ କିଛି ପଡ଼େନା ତ ମନେ ।
ମନେହୁଏ ଦେଖୁଥିଲି ମୁଁ ଏକ ଦୁଃସ୍ୱପ୍ନ, ସୁଖ ଦୁଃଖ କିଛି ହିଁ ନ ଜାଣେ ।
ବାସ୍ତବ ମୋ ମନେହୁଏ ସ୍ୱପ୍ନ, ସ୍ୱପ୍ନ ପୁଣି ଲାଗେ ମୋତେ ସତ ।
ମୁଁ କିଏ ? ମୁଁ କି ଏକ ସମୟର ଭିନ୍ନମୁଖୀ ସ୍ରୋତ,
ନା ଏକ ଅସମ୍ବନ୍ଧ, ଅର୍ଥହୀନ ଖାଙ୍କାର ଅସ୍ତିତ୍ୱ ??

ମୁଁ ଏକ ଯ୍ମାହ୍ମାଯ୍ମା ଖାଁ, ଆସିଚ ମୁଁ ମୋ ମଧ୍ୟ ବାହାର ।
ମୁଁ ଏକ, ମୁଁ ବହୁ । ମୁଁ ପୁଣି ଏକ ଅସୁମାର
ଲୋଭୀର ହାବେଳ ପର ଛୁଟେ ଅହର୍ନିଶ—
ନିଜକୁ କରିବା ପାଇଁ ବାଜ, ଶତଖଣ୍ଡ, ଏବଂ ତା ସଂଗରେ ଅନ୍ୟ ସବୁ ଧ୍ୱଂସ ।

—ଡିସେଂବର, ୧୯୭୧



ଯୋଗାଡେ଼ ଲୁହର ଧାର, ଦ୍ରବଣ ମୁଁ କଣ ବସ୍ତୁ କାଣ୍ଟ ?
ଧଇଁସଇଁ ଅଶ୍ରୁ ବଳ ଅପସ୍ମାର ଦେହେ ? ନିଶ୍ଚୟ କିଛି ଘଟଣା ତ ମନେ ।
ମନେହୁଏ ଦେଖିଥିଲି ମୁଁ ଏକ ଦୁଃସ୍ୱପ୍ନ, ସୁଖ ଦୁଃଖ କିଛି ହିଁ ନ ଜାଣେ ।
ବାସ୍ତବ ମୋ ମନେହୁଏ ସ୍ୱପ୍ନ, ସ୍ୱପ୍ନ ପୁଣି ଲାଗେ ମୋତେ ସତ ।
ମୁଁ କିଏ ? ମୁଁ କି ଏକ ସମୟର ଭିନ୍ନମୁଖୀ ସ୍ରୋତ,
ନା ଏକ ଅସମ୍ବନ୍ଧ, ଅର୍ଥହୀନ ଢାଞ୍ଚାର ଅସ୍ତିତ୍ୱ ??

ମୁଁ ଏକ ସ୍ୱାସ୍ଥ୍ୟା ଖାଁ, ଆସିବ ମୁଁ ମୋ ମଧ୍ୟ ବାହାର ।
ମୁଁ ଏକ, ମୁଁ ବହୁ । ମୁଁ ପୁଣି ଏକ ଅସୁମାର
ଇଚ୍ଛାର ହାବେଳି ପର ଛୁଟେ ଅହର୍ନିଶ—
ନିଜକୁ କରିବା ପାଇଁ ବଳି, ଶତଖଣ୍ଡ, ଏବଂ ତା ସଂଗରେ ଅନ୍ୟ ସତ୍ତ୍ୱ
ଧ୍ୱଂସ ।

—ଡିସେମ୍ବର, ୧୯୭୧

